

**SANJAY RASTOGI, I.A.S.**
*District Magistrate &*
*Collector,* **JAJPUR**

As District Magistrate, Jajpur I am happy to know that WHO's WHO of Jajpur District with particular emphasis on Journalists is being published.

(SANJAY RASTOGI)

Digitized by PPRACHIN, SOA

# ଯାଜପୁର ଜିଲ୍ଲା ଓ ସାମ୍ବାଦିକ

# JAJPUR DISTRICT & ITS' JOURNALISTS


*ସଂକଳକ :*

**ମହେଶ୍ୱର ବଳ**

*ସଂପାଦନା ମଣ୍ଡଳୀ :*

ଶୁଭେନ୍ଦୁ ଭୂୟାଁ
ରମାକାନ୍ତ ଜେନା
ପ୍ରିୟନାଥ ମହାପାତ୍ର
କୃଷ୍ଣ ଚନ୍ଦ୍ର ସାମଲ



*ପ୍ରକାଶକ :*

ଯାଜପୁର ଜିଲ୍ଲା ସାମ୍ବାଦିକ ସଂଘ



Digitized by PPRACHIN, SOA

# ଯାଜପୁର ଜିଲ୍ଲା ଓ ସାମ୍ବାଦିକ

*ପ୍ରକାଶକ :*
ଯାଜପୁର ଜିଲ୍ଲା ସାମ୍ବାଦିକ ସଂଘ

*ସଂକଳକ :*
ମହେଶ୍ୱର ବଳ

*ସଂପାଦନା ମଣ୍ଡଳୀ :*
ଶୁଭେନ୍ଦୁ ଭୂୟାଁ
ରମାକାନ୍ତ ଜେନା
ପ୍ରିୟନାଥ ମହାପାତ୍ର
କୃଷ୍ଣ ଚନ୍ଦ୍ର ସାମଲ

*ପ୍ରକାଶନ ବର୍ଷ :*
ଜୁଲାଇ ୭, ୧୯୯୮ (ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ)

*ମୁଦ୍ରଣ :* ଗ୍ରାଫିକ୍ ଆର୍ଟ ଅଫସେଟ୍ ପ୍ରେସ, କଟକ - ୧

*ମୂଲ୍ୟ :* ସାମ୍ବାଦିକ କଲ୍ୟାଣ ପାଣ୍ଠିକୁ ଦାନ: ୫୦ଟଙ୍କା

*ଯୋଗାଯୋଗ ଠିକଣା :*
ସାଧାରଣ ସଂପାଦକ
**ଯାଜପୁର ଜିଲ୍ଲା ସାମ୍ବାଦିକ ସଂଘ**
ସା/ପୋଷ୍ଟ : ଚଣ୍ଡୀଖୋଲ, ଯାଜପୁର
ଫୋନ : ୦୬୭୨୫ - ୮୫୨୨

# JAJPUR DIST. & ITS' JOURNALISTS

*Publisher :*
JAJPUR DIST JOURNALISTS' ASSOCIATION

*Compiled by :*
**MAHESWAR BAL**

*Board of Editors :*
SUVENDHU BHUYAN
RAMAKANTA JENA
PRIYANATH MOHAPATRA
KRUSHNA CHANDRA SAMAL

*Year of Publication :* 7th July 1998
Golden Jubilee Year of Independence

*Printed at :* Graphic Art Offset Press, Cuttack - 1

*Price :*
(Donation to Journalists' Welfare Fund)
Rupees 50 only

*Correspondence :*
General secratary
JAJPUR DIST JOURNALISTS' ASSOCIATION
AT/P.O-Chandikhole. Jajpur

Digitized by PPRACHIN, SOA

# ସୂଚୀପତ୍ର

(ଯାଜପୁର ଜିଲ୍ଲା ଓ ସାମ୍ୟିକ)



Digitized by PPRACHIN, SOA

| କ୍ର.ନଂ. | ବିଷୟ | ପୃଷ୍ଠା |
|---|---|---|


## କୃତଜ୍ଞତା ଜ୍ଞାପନ

ଏହି ପୁସ୍ତକ ପ୍ରସ୍ତୁତି ପାଇଁ ଯେଉଁମାନେ ମୋ ସହିତ କଷ୍ଟ ସ୍ୱୀକାର କରି ତଥ୍ୟ, ବିବରଣୀ, ବିଜ୍ଞାପନ ଆଦି ସଂଗ୍ରହ କରିଛନ୍ତି, ସୁପରାମର୍ଶ ଦେଇଛନ୍ତି, ଜିଲ୍ଲାପାଳ ଶ୍ରୀ ସଞ୍ଜୟ ରସ୍ତୋଗୀଙ୍କ ପରି ଯେଉଁମାନେ ତୁରନ୍ତ ପ୍ରକାଶନ ନିମନ୍ତେ ଉତ୍ସାହିତ କରିଛନ୍ତି, ସଂପୃକ୍ତ କାର୍ଯ୍ୟକ୍ରମର ସଫଳତା ପାଇଁ ଗଠିତ ସୁବର୍ଣ୍ଣ ଜୟନ୍ତୀ ପାଳନ ଅଭ୍ୟର୍ଥନା ସମିତିର ସଭ୍ୟବୃନ୍ଦଙ୍କ ସଫଳ ସହଯୋଗ କରିଛନ୍ତି, କଟକ ତ୍ରିପାଠୀ ଜେରକ୍ସର ମାଲିକ ଶ୍ରୀ ଶୁଭ୍ରାଂଶୁ ତ୍ରିପାଠୀ ଓ ତାଙ୍କ ସହକର୍ମୀ ଭାଇମାନେ, ପ୍ରଚ୍ଛଦ ପ୍ରସ୍ତୁତିକାରୀ ଶ୍ରୀ ଜ୍ଞାନ ରଥ ପ୍ରମୁଖ ଓ ଏହି ସଂକଳନ ପ୍ରସ୍ତୁତି ସମ୍ପର୍କୀୟ ପ୍ରଥମ ପରିକଳ୍ପନା ପ୍ରଦାନ କରିଥିବା ସାମ୍ବାଦିକ ଶ୍ରୀ ଅମୂଲ୍ୟ ପତିଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରୁଛି ।

**ଫଟୋ ପ୍ରାପ୍ତି :**

ପର୍ଯ୍ୟଟନ ବିଭାଗ ଓଡ଼ିଶା ସରକାର, ରୂପରଙ୍ଗ ଷ୍ଟୁଡିଓ (ଚଣ୍ଡୀଖୋଲ), ବିଜୟ ମହାରଣା (ଯାଜପୁର), ପ୍ରଫୁଲ୍ଲ ଶତପଥୀ (ସାମ୍ବାଦିକ ଧର୍ମଶାଳା), ଡ଼ଃ ହରିଶ୍ଚନ୍ଦ୍ର ପୃଷ୍ଟି (ବୌଦ୍ଧ ଗବେଷକ) ।

Digitized by PPRACHIN, SOA

# ସଂପାଦକୀୟ......

ସମଗ୍ର ଓଡ଼ିଶାର ୩୦ଟି ଜିଲ୍ଲା ମଧ୍ୟରେ ନବ ଗଠିତ ଯାଜପୁର ଏକ କ୍ଷୁଦ୍ର ଜିଲ୍ଲା । ଗୋଟିଏ ସବ୍-ଡିଭିଜନ ବା ଗୋଟିଏ ଲୋକସଭା ନିର୍ବାଚନ ମଣ୍ଡଳୀର ଡେରାବିଶି ବ୍ଲକ୍‌କୁ ବାଦ୍‌ଦେଇ ଅବଶିଷ୍ଟ ଅଞ୍ଚଳ ଏହି ଜିଲ୍ଲାର ପରିସୀମା ଅନ୍ତର୍ଭୁକ୍ତ । ଯାଜପୁରକୁ ମା' ବିରଜାଙ୍କର ପୀଠସ୍ଥଳୀ, ଶକ୍ତିକ୍ଷେତ୍ର ଓ ଓଡ଼ିଶାର ପୁରାତନ ରାଜଧାନୀ ବୋଲି କୁହାଯାଏ । ଉତ୍ତର କଟକ ଜିଲ୍ଲା ଗଠନର ପରିକଳ୍ପନା ଅନୁଯାୟୀ ଯଦି ଯାଜପୁର ସହିତ କେନ୍ଦ୍ରପଡ଼ା ସବ୍-ଡିଭିଜନ୍ ଥା'ନ୍ତା ତେବେ ଏହା ରାଜ୍ୟର ଏକ ସାମାଜିକ, ଧାର୍ମିକ, ପୌରାଣିକ ଓ ଅର୍ଥନୈତିକ ଭିତ୍ତିଭୂମି ପରିପୂର୍ଣ୍ଣ ଜିଲ୍ଲାର ମର୍ଯ୍ୟାଦା ପାଇବାରେ ହେଳା ଘଟି ନଥାନ୍ତା ।

ଯାଜପୁର ନାଁ କହିଲେ ବିଭିନ୍ନ ମହଲରେ ଟିକିଏ ନାକଟେକା ଅଭିରୁଚି ପରିଲକ୍ଷିତ ହୋଇଥାଏ । ତାହାର କାରଣ କିଏ କ'ଣ ଜାଣେ ମୁଁ ଜାଣେନା । ଏହି କଥା ସତ୍ୟ ଯେ, ଯାଜପୁରର ଐତିହ୍ୟ ସର୍ବପୁରାତନ । ଯେଉଁ ଜିଲ୍ଲାରେ ପଞ୍ଚକ୍ଷେତ୍ର ମଧ୍ୟରୁ ଦୁଇଟି କ୍ଷେତ୍ର (ବିରଜା ଓ ମହା ବିନାୟକ ପୀଠସ୍ଥଳୀ) ଅବସ୍ଥିତ, ଦୁଇଟି ପାଞ୍ଜି ପ୍ରଚଳିତ, ଯେଉଁ ଜିଲ୍ଲାରୁ "ବୁଦ୍ଧଂ ଶରଣଂ ଗଚ୍ଛାମି, ସଂଘଂ ଶରଣଂ ଗଚ୍ଛାମି" ଧ୍ୱନି ସମଗ୍ର ବିଶ୍ୱକୁ ନିନାଦିତ କରୁଛି, ଯେଉଁ ଜିଲ୍ଲାର ଖଣିଜ ସମ୍ପଦ ସମଗ୍ର ବିଶ୍ୱରେ ବିରଳ, ଦେଶ ବିଦେଶର ବିଭିନ୍ନ ପ୍ରାନ୍ତକୁ ଗମନାଗମନର ମୁଖଶାଳା ଅବସ୍ଥିତ ସେହି ଜିଲ୍ଲା ସଂକୀର୍ଣ୍ଣତା ଠାରୁ ଉର୍ଦ୍ଧ୍ୱରେ ଅଛି ଓ ରହିବାର ପ୍ରାମାଣିକ ବିଷୟବସ୍ତୁ ଉପସ୍ଥାପନ କରିବାକୁ ଆମ୍ଭେ ସାମ୍ବାଦିକମାନେ ଚେଷ୍ଟା କରୁଛୁ ।

ଇତି ମଧ୍ୟରେ ଭାରତବର୍ଷ ତା'ର ସ୍ୱାଧୀନତାର ୫୦ ବର୍ଷ ଅତିକ୍ରମ କରୁଛି । ଆମେ ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ପାଳନ କରିବା ଅବସରରେ ଯାଜପୁର ଜିଲ୍ଲା ସାମ୍ବାଦିକ ସଂଘ ପରି ଏକ ପୁରାତନ ଓ ବୌଦ୍ଧିକ ସଂଗଠନ ପକ୍ଷରୁ ତା'ର ଅଞ୍ଚଳ ଓ ଜନସାଧାରଣଙ୍କ ମର୍ଯ୍ୟାଦାକୁ ଭାରତୀୟ ମହା ସ୍ରୋତରେ ସାମିଲ କରି ରଖିବା ପାଇଁ ପ୍ରୟାସ କରାଯାଇଛି ।

ଏହି ଜିଲ୍ଲାର ପ୍ରଶାସନିକ ବ୍ୟବସ୍ଥା ଅତ୍ୟନ୍ତ ଦୁର୍ବଳ । ସାମାଜିକ ଓ ରାଜନୈତିକ ଚିନ୍ତା ଅତ୍ୟନ୍ତ ସଂକୀର୍ଣ୍ଣ । କାହାରିକୁ କେହି ସମ୍ମାନ ଦେବାରେ ପଛୁଆ । ଚଣ୍ଡୀଖୋଲ ଯାଜପୁର, ସୁକିନ୍ଦା ବରୀ ଭିତରେ କାଳ୍ପନିକ ଭାବନା ସେତେ ଉନ୍ନତ ନୁହେଁ । ତଥାପି ଆମେ ସମଗ୍ର ରାଜ୍ୟରେ ଯେ ଏକ ପୁଷ୍ଟ ଭିତ୍ତିଭୂମି ଉପରେ ବିରାଜିତ, ଏ କଥାକୁ ପ୍ରମାଣ ଦେବାପାଇଁ ଉଦ୍ୟମ କରୁଛୁ । ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ପାଳନ ଅବସରରେ ଏ ଜିଲ୍ଲାର ଭୌଗୋଳିକ ସ୍ଥିତି, ନ୍ୟାୟପାଳିକା, ବ୍ୟବସ୍ଥାପକ, ପ୍ରଶାସନିକ, ପୌରାଣିକ, ପ୍ରତ୍ନତାତ୍ତ୍ୱିକ, ତଥା ସମ୍ବିଧାନର ଚତୁର୍ଥ ସ୍ତମ୍ଭ ସାମ୍ବାଦିକମାନଙ୍କ ଉପରେ ତଥ୍ୟ ସମ୍ବଳିତ ଏକ ପରିଚୟ ପୁସ୍ତକ ପ୍ରକାଶନ କରିବାର ଚିନ୍ତା ପୋଷଣ କରିଥିଲୁ । ଏହା ସହିତ ସମଗ୍ର ରାଜ୍ୟରେ ଯାଜପୁରର ସମ୍ମାନ ବଢ଼ାଇବା ପାଇଁ ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ପାଳନର ପରିକଳ୍ପନା ଓ ସାମ୍ବାଦିକ ମାନଙ୍କର ଏକ କର୍ମଶାଳା କାର୍ଯ୍ୟସୂଚୀ ଗ୍ରହଣ କରିଛୁ ।



Digitized by PPRACHIN, SOA

ଯାଜପୁର ଜିଲ୍ଲା ଓ ସାମ୍ବାଦିକ ଶୀର୍ଷକ ଏହି ପୁସ୍ତକ ପ୍ରକାଶିତ କରିବା ପ୍ରସ୍ତାବ ଯେତେବେଳେ ଆଲୋଚନା ହେଲା ଜିଲ୍ଲାପାଳ ଶ୍ରଦ୍ଧେୟ ଶ୍ରୀ ସଞ୍ଜୟ ରସ୍ତୋଗୀ, ଆଇ.ଏ.ଏସ୍. ପ୍ରସ୍ତାବଟିକୁ ସଫଳ କାର୍ଯ୍ୟକାରୀ କରିବାପାଇଁ ଯେପରି ସହଯୋଗ କଲେ ମୁଁ ତାଙ୍କୁ ସଂଘ ଓ ସମଗ୍ର ଯାଜପୁର ବାସୀଙ୍କ ପକ୍ଷରୁ କୃତଜ୍ଞତା ଜ୍ଞାପନ କରୁଛି । ସାମ୍ବାଦିକମାନଙ୍କ ପ୍ରତି ତାଙ୍କର ଗଭୀର ସମ୍ମାନକୁ ଏହି ପୃଷ୍ଠା ମାଧ୍ୟମରେ ସମଗ୍ର ରାଜ୍ୟବାସୀଙ୍କୁ ପରିଚିତ କରାଉଛି । ଏହି ପୁସ୍ତକ ଯେ ଯାଜପୁର ଜିଲ୍ଲାକୁ ସମ୍ୟକ୍ ଭାବେ ପରିଚିତ କରାଇ ପାରିବ ଏଥିରେ ଦ୍ୱିମତ ହେବାର ନାହିଁ । ଅନେକ ବିଷୟ ପ୍ରକାଶ କରିବା ପାଇଁ ସମୟ, ସ୍ଥାନ ଓ ସଂଗ୍ରାହକମାନଙ୍କର ଅଭାବ ଯୋଗୁଁ ସମ୍ଭବ ହୋଇପାରି ନାହିଁ । ତେଣୁ ଏହି ପୁସ୍ତକରେ ତ୍ରୁଟି ବିଚ୍ୟୁତି ରହିଥିବ ନିଶ୍ଚୟ । କାରଣ କିଛି କାର୍ଯ୍ୟ କରାଗଲେ ତ୍ରୁଟି ବିଚ୍ୟୁତି ପରିଲକ୍ଷିତ ହୋଇଥାଏ । ମାତ୍ର ନିକର୍ମାର କିଛି ଭୁଲ ତ୍ରୁଟି ରହେ ନାହିଁ । ଏହା ପ୍ରସ୍ତୁତ କରିବା କ୍ଷେତ୍ରରେ ସହଯୋଗ ଟିକିଏ କମ୍ ମିଳିଛି- କେତେକ ସମୟରେ ବିରୋଧାଭାଷ ଦେଖାଦେଇଛି । ତଥାପି ଏକ ସତ୍‌କର୍ମର ମୂଳଦୁଆ ସ୍ଥାପନ ହେଉ ଓ ପ୍ରମାଣିତ ହେଉ ଯେ, କିଛି କରିବାର ଅଭିଳାଷ ଏ ସମାଜରେ କାହାରି ନା' କାହାରି ରହିଛି ।

ସମାଜର ଜାଗ୍ରତ ପ୍ରହରୀ ଭାବେ କାର୍ଯ୍ୟରତ ସାମ୍ବାଦିକମାନଙ୍କ ସ୍ୱାଧୀନତା ତଥା ସୁରକ୍ଷା ପ୍ରତି ପ୍ରଶାସନ ସକ୍ରିୟ ଦୃଷ୍ଟି ଦେଉ ନଥିବା ଦୁଃଖଦାୟକ ବିଷୟ ହୋଇଛି । ଦେଶ ଗଠନରେ ସାମ୍ବାଦିକମାନଙ୍କର ଭୂମିକା ଯଥେଷ୍ଟ । ସମାଜକୁ ସଚେତନ କରାଇବା, ଦୁର୍ନୀତିଗ୍ରସ୍ତ ଚରିତ୍ରମାନଙ୍କ ମୁଖା ଖୋଲିବା ଏବଂ ସମସ୍ତ ତାଜା ଖବର ଲୋକଲୋଚନକୁ ଆଣିବାରେ ସାମ୍ବାଦିକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । ତେଣୁ ଦେଶବାସୀ ସେମାନଙ୍କ ପ୍ରତି ସମ୍ବେଦନଶୀଳ ହେବା ଏକାନ୍ତ ଆବଶ୍ୟକ ବୋଲି ମୁଁ ଅନୁଭବ କରେ ।

ଯେଉଁ ସାମ୍ବାଦିକଟିଏ ନିଜ ବଞ୍ଚିବାର ଦାୟିତ୍ୱକୁ ଉପେକ୍ଷା କରି ସମ୍ବିଧାନର ଚତୁର୍ଥ ସ୍ତମ୍ଭକୁ ବଞ୍ଚାଇ ରଖିବା ସଙ୍ଗେ ସଙ୍ଗେ ଜନସାଧାରଣଙ୍କ ଭଲମନ୍ଦରେ ଦୈନନ୍ଦିନ ଅଂଶଗ୍ରହଣ କରେ, ସେମାନଙ୍କ ନାମ ତାଲିକାକୁ ଖବରକାଗଜ ମାଲିକମାନେ ପ୍ରକାଶ କରିବାକୁ କିମ୍ବା କାହାରିକୁ ଜଣାଇବାକୁ ମଧ୍ୟ ଇଚ୍ଛା କରନ୍ତି ନାହିଁ । ରାଜ୍ୟ ଓ ଜିଲ୍ଲାମାନଙ୍କରେ ଥିବା କୌଣସି ସାମ୍ବାଦିକ ସଂଗଠନ ବୋଧହୁଏ ଏ ଯାବତ୍ ସାମ୍ବାଦିକମାନଙ୍କର ପୂର୍ଣ୍ଣାଙ୍ଗ ତାଲିକା ମଧ୍ୟ ପ୍ରସ୍ତୁତ କରିପାରି ନାହାନ୍ତି । ଆମେ ଯାଜପୁର ଜିଲ୍ଲାର ସାମ୍ବାଦିକମାନଙ୍କ ଫଟୋ ଓ ସଂକ୍ଷିପ୍ତ ପରିଚୟ ଏହି ପୁସ୍ତକରେ ସ୍ଥାନ ଦେଇଛୁ । ଯେଉଁ କେତେଜଣଙ୍କର ଫଟୋ ପରିଚୟ ସ୍ଥାନ ପାଇନାହିଁ ସେମାନଙ୍କ ନାମ ମଧ୍ୟ ଏଥିରେ ପ୍ରକାଶ କରାଯାଇଛି ।

ଏହି ପୁସ୍ତକ ପ୍ରକାଶନ ପରେ ସାମ୍ବାଦିକ କଲ୍ୟାଣ ପାଣ୍ଠି ବିଷୟରେ ମୁଣ୍ଡ ପୂରାଯିବ । ଏଥିରୁ ଲବ୍ଧ ଅର୍ଥ ସେହି ପାଣ୍ଠିରେ ଜମା ରଖାଯାଇ ବାର୍ଦ୍ଧକ୍ୟ, ରୋଗାଗ୍ରସ୍ତ ଓ ଆବଶ୍ୟକ କରୁଥିବା ସାମ୍ବାଦିକମାନଙ୍କ କଲ୍ୟାଣ ନିମନ୍ତେ ବିନିଯୋଗ କରାଯିବ ବୋଲି ସ୍ଥିର କରିଛୁ ।

ଆସନ୍ତୁ, ମିଳିମିଶି ଏ ଜିଲ୍ଲାର ସର୍ବାଙ୍ଗୀନ ବିକାଶ ତଥା ସାମ୍ବାଦିକତା ଭଳି ମହନୀୟ ପେଶାର ପବିତ୍ରତା ରକ୍ଷା କରିବା ଦିଗରେ ଆଗେଇ ଯିବା ।

(ମହେଶ୍ୱର ବଳ)
*ସାଧାରଣ ସଂପାଦକ*
ଯାଜପୁର ଜିଲ୍ଲା ସାମ୍ବାଦିକ ସଂଘ



Digitized by PPRACHIN, SOA

# ଯାଜପୁର ଜିଲ୍ଲା

ଉତ୍ତର

**ଆମ ଜିଲ୍ଲା ଅଧିନ**
**୧୦ ଟି ବ୍ଲକ**

- ☆ କୋରେଇ
- ☆ ବଡଚଣା
- ☆ ବରୀ
- ☆ ବିଂଝାରପୁର
- ☆ ଦଶରଥପୁର
- ☆ ଦାନଗଦୀ
- ☆ ଯାଜପୁର
- ☆ ଧର୍ମଶାଳା
- ☆ ରସୁଲପୁର
- ☆ ସୁକିନ୍ଦା



କେନ୍ଦୁଝର

ଭଦ୍ରକ

ଢେଙ୍କାନାଳ

ଦାନଗଦି

ସୁକିନ୍ଦା

କୋରେଇ

ରସୁଲପୁର

ଯାଜପୁର

ଦଶରଥପୁର

ଧର୍ମଶାଳା

ବିଞ୍ଝାରପୁର

ବରୀ

ବଡଚଣା

କେନ୍ଦ୍ରାପଡା

କଟକ



Digitized by PPRACHIN, SOA

# ପ୍ରଚ୍ଛଦ ପଟ ସୂଚନା

- ହିନ୍ଦୁ ଧାର୍ମିକ ଚେତନାର ପଞ୍ଚକ୍ଷେତ୍ର ମଧ୍ୟରୁ ଅନ୍ୟତମ କ୍ଷେତ୍ର ''ଶକ୍ତି କ୍ଷେତ୍ର''ର ଆରାଧ୍ୟା ଦେବୀ ମା' ବିରଜାଙ୍କ ମନ୍ଦିର ।
- ବିଶ୍ୱ ପ୍ରସିଦ୍ଧ ବୌଦ୍ଧ ବିହାର ରତ୍ନ ଗିରି ଠାରେ ଉତ୍‌ଖୋଦିତ ମୁଖଶାଳା, ଯାହା ସମଗ୍ର ବିଶ୍ୱରେ ବିରଳ ।
- ସେହି ରତ୍ନଗିରି ବୌଦ୍ଧ ବିହାରରୁ ଆବିଷ୍କୃତ ଖୋଦିତ ପଥର ମୂର୍ତ୍ତି ।
- ପଞ୍ଚକ୍ଷେତ୍ର ମଧ୍ୟରୁ ଅନ୍ୟତମ ''ସିଦ୍ଧ ବା ବିନାୟକ କ୍ଷେତ୍ର'' ମହାବିନାୟକଙ୍କ ସ୍ୱୟଂଭୂ ମୂର୍ତ୍ତି । ଏହି କ୍ଷେତ୍ରରେ ଗଣେଶ, ଭାସ୍କର, ବିଷ୍ଣୁ, ଶିବ, ଦୁର୍ଗା ଆବିର୍ଭୂତ ।

ଏହି ସମସ୍ତ କୀର୍ତ୍ତି ଓ ପୀଠସ୍ଥଳ ଯାଜପୁର ଜିଲ୍ଲାରେ ଅବସ୍ଥିତ ହୋଇଥିବାରୁ ସେଗୁଡ଼ିକୁ ପ୍ରଚ୍ଛଦରେ ସ୍ଥାନିତ କରାଯାଇଛି ।

ସଂକଳକ



Digitized by PPRACHIN, SOA

# ମା' ବିରଜା

✤ ଉତ୍କଳ କେଶରୀ ଦାସ

ଯାଜପୁର : ବରାହ, ବିରଜା, ବିପ୍ରା, ବେଦା ଓ ବୈତରଣୀ ନଦୀର ପୁଣ୍ୟ ସମାରୋହ ଘଟିଛି ଏଇ ଯାଜପୁରରେ । ମହାଭାରତ, ଭାଗବତ, ବାମନପୁରାଣ, ବାୟୁ ପୁରାଣ, ବୌଦ୍ଧ ଗ୍ରନ୍ଥ ଜଠାବଂଶ, ତୀର୍ଥ ଚନ୍ତାମଣି, କପିଳ ସଂହିତା ଓ ବୃହନୀଳତନ୍ତ୍ର ଭଳି ବହୁ ପୁରାଣ ଶାସ୍ତ୍ରରେ ବର୍ଣ୍ଣିତ ଯାଜପୁରର ଅତୀତ ଓ ବର୍ତ୍ତମାନ ଭିତରେ ବହୁ ପାର୍ଥକ୍ୟ ରହିଯାଇଛି ।

ପୁରାଣ ପ୍ରସିଦ୍ଧ ବିରଜା କ୍ଷେତ୍ରରେ ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି ମା' ବିରଜା । ଏକ ମତରେ ଦେବୀ ବିରଜା ବ୍ରହ୍ମାଗ୍ନୀଜାତା । ସ୍ୱୟଂ ବ୍ରହ୍ମାଙ୍କ ଦ୍ୱାରା ପ୍ରତିଷ୍ଠାତା । ବ୍ରହ୍ମା ଏହି ସ୍ଥାନକୁ ଅତ୍ୟନ୍ତ ପବିତ୍ର ମନେକରି ଯଜ୍ଞ କରିବାର ଇଚ୍ଛାରେ ପ୍ରଥମେ ଗଙ୍ଗାଙ୍କୁ ନିମନ୍ତ୍ରଣ କଲେ । ଗୋନାସୀକା ପର୍ବତରୁ ଗଙ୍ଗା ରୂପିଣୀ ବୈତରଣୀ ଆବିର୍ଭୂତ ହୋଇ ଆଗମନ କଲେ ଏହି ପୂଣ୍ୟ କ୍ଷେତ୍ରକୁ । ତୀରବର୍ତ୍ତୀ ଲୋକମାନଙ୍କର ସ୍ନାନାଦି କର୍ମରେ ପବିତ୍ରତା ନଷ୍ଟ ହୋଇଥିବା ବୈତରଣୀଙ୍କ ଅନୁରୋଧ କ୍ରମେ ବ୍ରହ୍ମା ବୈତରଣୀ କୂଳରେ ପ୍ରତିକ୍ରୋଶ ଅନ୍ତରରେ ଶିବଲିଙ୍ଗ ସ୍ଥାପନା କଲେ ।

ବୈତରଣୀ ନଦୀର ପବିତ୍ରତା ଅମ୍ଳାନ ରହିଲା । ବ୍ରହ୍ମା ଏଠାରେ ଯେଉଁ ଯଜ୍ଞ ଅନୁଷ୍ଠାନ କଲେ ସେଥିରୁ ପ୍ରଥମେ ଉଦ୍‌ଭବ ହେଲେ ହର ଈଶାନେଶ୍ୱର । ତାଙ୍କର ଦକ୍ଷିଣ ଭାଗରେ ଗାହର୍ପତ୍ୟ ନାମକ ଅଗ୍ନିକୁଣ୍ଡରୁ ସ୍ୱତେଜରେ ଦଶ ଦିଗକୁ ଉଦ୍‌ଭାସିତ କରି ଦିବ୍ୟ ବସ୍ତ୍ର ଓ ଅଳଙ୍କାର ଧାରଣ କରି ମା'ବିରଜା ଉତ୍‌ଥିତ ହେଲେ । ବ୍ରହ୍ମାଙ୍କର ଭକ୍ତିପୂର୍ଣ୍ଣ ସ୍ତବରେ ସନ୍ତୁଷ୍ଟ ହୋଇ ସ୍ୱୟଂ ବିରଜା ନାମ ଧାରଣ କରିବାକୁ ଇଚ୍ଛା ପ୍ରକାଶ କଲେ । ବ୍ରହ୍ମା ଦେବୀଙ୍କର ନାମ କରଣ କଲେ ବିରଜା । ଏହା କେଉଁ ପୁରାତନ କାଳର କଥା । କେତେ ହଜାର ବର୍ଷ ତଳେ ବ୍ରହ୍ମା ଯଜ୍ଞରୁ ଦେବୀଙ୍କର ଆବିର୍ଭାବ ହୋଇଥିଲା, ତାହା ସ୍ଥିର ନିଶ୍ଚିତ ଭାବେ ପୁରାଣକାରମାନେ କହିନାହାନ୍ତି । ତେବେ ମାଘ ମାସ ତ୍ରିବେଣୀ ଅମାବାସ୍ୟା ତିଥି ଶ୍ରବଣା ନକ୍ଷତ୍ର






Digitized by PPRACHIN, SOA

ଯୁକ୍ତ ମକର ଚନ୍ଦ୍ରରେ ଦେବୀ ବ୍ରହ୍ମା ଯଜ୍ଞରୁ ଆବିର୍ଭୂତ ହୋଇଥିଲେ ବୋଲି ଏହି ଦିନ ଦେବୀଙ୍କର ସ୍ୱନକ୍ଷତ୍ର ଉତ୍ସବ ପାଳିତ ହୋଇ ଆସୁଛି ।

ମା ବିରଜାଙ୍କର ଏକ ଧ୍ୟାନରେ କୁହାଯାଇଛି :-

ଶ୍ୟାମାଙ୍ଗୀ ସିଂହମାରୂଢ଼ାଂ ଦ୍ୱିଭୁଜା ଶୂଳଧାରିଣୀମ୍
ବିଭ୍ରତୀଂ ବାମ ହସ୍ତେନ ମହିଷାସୁର ପୁଚ୍ଛକାମ୍ ।
ସୁରାସୁରୈର୍ବନ୍ଦ୍ୟମାନାଂ ତ୍ରିନେତ୍ରା ମିନ୍ଦୁ ଶେଖରାମ୍
ସର୍ବାଭରଣ ସଂପନ୍ନା ଭକ୍ତାନୁଗ୍ରହ କାରିଣୀମ୍ ।
ବନ୍ଦେ ଶ୍ରୀ ବିରଜାଂ ଦେବୀ ଭକ୍ତି ମୁକ୍ତି ପ୍ରଦାୟିନୀମ୍ ।

ମା' ବିରଜାଙ୍କର କ୍ଷେତ୍ର ସମସ୍ତ କ୍ଷେତ୍ର ମଧ୍ୟରେ ଏକ ସ୍ୱାତନ୍ତ୍ର୍ୟ ତଥା ବୈଚିତ୍ର୍ୟର ପରିଚୟ ପ୍ରଦାନ କରିଥାଏ । ଏ କ୍ଷେତ୍ର ସମସ୍ତ କ୍ଷେତ୍ର ମଧ୍ୟରେ ଚନ୍ଦ୍ରମା ପରି ବିରାଜିତ । ମହାଭାରତରେ ଲୋମଶ ମୁନି, ଯୁଧିଷ୍ଠିରଙ୍କୁ ଏହି ତୀର୍ଥ ସଂପର୍କରେ କହିଛନ୍ତି–

ତତୋ ବୈତରଣୀଂ ଗଚ୍ଛେତ୍ ସର୍ବପାପ ପ୍ରମୋଚନୀମ୍
ବିରଜାଂ ତୀର୍ଥମାସାଦ୍ୟ ବିରାଜତି ଯଥା ଶଶୀ । (ବନପର୍ବ)

ମା' ବିରଜାଙ୍କର କ୍ଷେତ୍ର ସମ୍ବନ୍ଧରେ ବ୍ୟାସ ଦେବଙ୍କ ମହାଭାରତ, ବାୟୁପୁରାଣ, ବାମନ ପୁରାଣ, କପିଳ ସଂହିତା, ବ୍ରହ୍ମ ପୁରାଣ, ବ୍ରହ୍ମାଣ୍ଡ ପୁରାଣ, ତୀର୍ଥ ଚିନ୍ତାମଣୀ, ତନ୍ତ୍ର ଚୂଡ଼ାମଣି ଏବଂ ଜଠାବଂଶ ଆଦି ବିଭିନ୍ନ ପୁରାଣ ଶାସ୍ତ୍ରରେ ଉଲ୍ଲେଖ ଅଛି । ବୌଦ୍ଧଗ୍ରନ୍ଥ ସଧର୍ମ ପୁଣ୍ଡରିକରେ ଗୌତମ ବୁଦ୍ଧ ସାରିପୁତଙ୍କୁ କହିଛନ୍ତି ଯେ ସେ ଦୂର ଭିବିଷ୍ୟତରେ ପଦ୍ମପ୍ରଭ ନାମରେ ବିରଜା କ୍ଷେତ୍ରରେ ଜନ୍ମ ଗ୍ରହଣ କରିବେ । ମହାଭାରତ ବନପର୍ବରେ ବର୍ଣ୍ଣନା ଅନୁସାରେ ପାଣ୍ଡବ ପଞ୍ଚଭ୍ରାତା ପତ୍ନୀ ଦ୍ରୌପଦୀଙ୍କ ସହ ତୀର୍ଥାଟନରେ ଆସି ଲୋମଶ ମୁନିଙ୍କ ପରାମର୍ଶ କ୍ରମେ ବୈତରଣୀରେ ସ୍ନାନ କରି ବିରଜା ଦେବୀଙ୍କ ଦର୍ଶନ କରିଥିଲେ । ତେଣୁ ଦେବୀ ଏ ସ୍ଥାନରେ କ୍ଷେତ୍ରାଧିଶ୍ୱରୀ ହୋଇ ରହିବାରେ ପ୍ରାଚୀନତା ସଂକ୍ରାନ୍ତରେ ସନ୍ଦେହ ନାହିଁ । ବ୍ରହ୍ମାଣ୍ଡ ପୁରାଣରେ ଉଲ୍ଲେଖ ଅଛି ଦେବୀ ସ୍ୱୟଂ ବ୍ରହ୍ମାଙ୍କ ଯଜ୍ଞ କୁଣ୍ଡାରୁ ଆବିର୍ଭୂତ ହୋଇଥିଲେ । ବାୟୁ ପୁରାଣରେ ଅନ୍ୟଏକ ମତ ବର୍ଣ୍ଣିତ ଅଛି :-

ପୁଲହଙ୍କଠାରୁ ଉତ୍ପନ୍ନ କର୍ଦ୍ଦମ ପ୍ରଜାପତିଙ୍କ ଆଜ୍ୟପା ନାମକ ପିତୃଗଣ ଅଛନ୍ତି । ଏମାନେ ସର୍ବଲୋକରେ ଯଥେଚ୍ଛା ବିହଙ୍ଗମ ପରି ରହନ୍ତି । ଏହି ପିତୃଗଣଙ୍କୁ ଫଳାର୍ଥୀ ବୈଶ୍ୟମାନେ ଶ୍ରାଦ୍ଧ ସମୟରେ ଆହ୍ୱାନ କରନ୍ତି । ଦେବୀ ବିରଜା ହେଉଛନ୍ତି ଏହି ଆଜ୍ୟପା ପିତୃଗଣଙ୍କ ମାନସୀ କନ୍ୟା, ଯଯାତୀଙ୍କ ଜନନୀ ଓ ନହୁଷଙ୍କ ସାଧ୍ୱୀ ପତ୍ନୀ ।

ପୌରାଣିକ ବର୍ଣ୍ଣନାରେ ଦକ୍ଷ ପ୍ରଜାପତିଙ୍କ ଯଜ୍ଞ ସମୟରେ ସତୀ ନିଜର ପତି ଶିବଙ୍କ ନିନ୍ଦା ସହି ନ ପାରି ଯଜ୍ଞାଗ୍ନିରେ ଝାସ ଦେଇଥିଲେ । ସତୀଙ୍କ ଦଗ୍ଧ ଶରୀରକୁ ସ୍କନ୍ଧରେ ବହନ କରି ଶିବ ଉନ୍ମତ୍ତ ପ୍ରାୟ ଘୁରି ବୁଲିଲେ । ଶେଷରେ ବିଷ୍ଣୁଙ୍କର ସୁଦର୍ଶନ ଚକ୍ରରେ ସତୀଙ୍କର ଅଙ୍ଗ ଛିନ୍ନ ହୋଇ ଦେହାଂଶଗୁଡ଼ିକ ବିଭିନ୍ନ ସ୍ଥାନରେ ପଡ଼ିଲା । ବିରଜା କ୍ଷେତ୍ରରେ ସତୀଙ୍କର ନାଭି ପଡ଼ି ନାଭିକୂପ ସୃଷ୍ଟି ହେଲା ଏବଂ ଏହି କ୍ଷେତ୍ର ନାଭିକ୍ଷେତ୍ର ଭାବରେ ପ୍ରସିଦ୍ଧ ଲାଭ କଲା । ପ୍ରାଚୀନ କୁବଜିକା ତନ୍ତ୍ରରେ ବିରଜା ଓ ବିମଳାଙ୍କର ନାମ ଉଲ୍ଲେଖ ଥିବା ଦେଖାଯାଏ ।



Digitized by PPRACHIN, SOA

ଜ୍ଞାନାର୍ଣ୍ଣବ ତନ୍ତ୍ରରେ ବର୍ଣ୍ଣିତ ପଚାଶଟି ପୀଠ ମଧ୍ୟରେ ବିରଜା ପୀଠ ଅନ୍ୟତମ । ରୁଦ୍ରଯାମଳ ତନ୍ତ୍ର ଅନୁସାରେ ଦେବୀଙ୍କ ବକ୍ଷ, ଜାନୁ ବିରଜା କ୍ଷେତ୍ରରେ ପଡ଼ିଥିଲା । ବୃହନ୍ନୀଳ ତନ୍ତ୍ର ଓ ପୀଠ ନିର୍ଣ୍ଣୟ ପ୍ରଭୃତି ତନ୍ତ୍ର ଗ୍ରନ୍ଥରେ ବିରଜାଙ୍କ ପୀଠରେ ଉଲ୍ଲେଖ ରହିଛି । ପ୍ରାଣ ତୋଷିଣୀ ତନ୍ତ୍ରରେ ଯାଜପୁରରେ ବିରଜା ପୂଜା ପାଉଛନ୍ତି ବୋଲି ଲେଖାଅଛି ।

ଏହିପରି ଭାବେ ବହୁ ପୁରାଣ ଓ ତନ୍ତ୍ର ଗ୍ରନ୍ଥରେ ବିରଜାଙ୍କ ପୀଠକୁ ଏକ ପ୍ରଧାନ ଶକ୍ତିପୀଠ ରୂପେ ମାନ୍ୟତା ଦିଆ ଯାଇଛି । ମା' ବିରଜା ରଜଗୁଣ ରହିତା, ରାଜସିକତା, ବିହୀନ ପରମ ବୈଷ୍ଣବୀ । ଦେବୀ ସ୍ୱୟଂ ପାର୍ବତୀ, କୁମାରୀ, ଶକ୍ତି ସ୍ୱରୂପିଣୀ ମହିଷ ମର୍ଦ୍ଦିନୀ ଦୁର୍ଗା । ପ୍ରାଚୀନ ବିରଜା ମନ୍ଦିର ଧ୍ୱଂସ ହୋଇଥିଲେ ମଧ୍ୟ ଏକ ଆଧୁନିକ ମନ୍ଦିରରେ ସିଂହାସନ ଉପରେ ମା' ବିରଜାଙ୍କର ବିଗ୍ରହ ଅକ୍ଷୁର୍ଣ୍ଣ ଅବସ୍ଥାରେ ବିରାଜିତ । ଦେବୀ ଦ୍ୱିଭୁଜା, ସିଂହ ବାହିନୀ, ମହିଷା ମର୍ଦ୍ଦିନୀ ଦୁର୍ଗା । ଦକ୍ଷିଣ ହସ୍ତରେ ଧାରଣ କରିଥିବା ଶୂଳରେ ମହିଷର ଶରୀରକୁ ବିଦ୍ଧ କରୁଛନ୍ତି । ବାମ ହସ୍ତରେ ମହିଷର ଲାଙ୍ଗୁଳ ଟାଣି ଧରିଛନ୍ତି । ଦେବୀଙ୍କ ବାମପାଦ ମହିଷର ମସ୍ତକରେ ନିବଦ୍ଧ । ବାହନ ଉନ୍ମତ୍ତ ସିଂହ ମହିଷର ଦକ୍ଷିଣ ଜାନୁକୁ କାମୁଡି ଧରିଛି । ଦେବୀ କିରୀଟ ମୁକୁଟ, ରତ୍ନହାର, କଙ୍କଣ, ଖଡ୍‌ଗ, କଟି ସୂତ୍ରରେ ଭୂଷିତ । ତାଙ୍କର ମୁକୁଟରେ ଗଣପତି, ବାସୁକୀ, ଯୋନି, ଲିଙ୍ଗ ଓ ଇନ୍ଦୁ ବିଦ୍ୟମାନ । ଏହି ଚିହ୍ନଗୁଡ଼ିକ ମଧ୍ୟରେ ଗଣପତି ଓ ଚନ୍ଦ୍ର ଆର୍ଯ୍ୟ ସଂସ୍କୃତିର ଏବଂ ନାଗ , ଯୋନି ଓ ଲିଙ୍ଗ ଅନାର୍ଯ୍ୟ ସଂସ୍କୃତିର । ଏହା ଆର୍ଯ୍ୟ ଓ ଅନାର୍ଯ୍ୟ ସଂସ୍କୃତିର ମିଳନର ପ୍ରତୀକ ।

ମା' ବିରଜା କେବେ ଓ କେଉଁମାନଙ୍କ ଦ୍ୱାରା ସ୍ଥାପିତ ହୋଇଥିଲେ, ତାହାର ନିର୍ଦ୍ଦିଷ୍ଟ ଐତିହାସିକ ତଥ୍ୟ ଅଦ୍ୟାପି ଉପଲବ୍‌ଧି ହୋଇନାହିଁ । ତେବେ ଆର୍ଯ୍ୟ ଗୋଷ୍ଠୀର ଲୋକମାନେ ବିରଜା କ୍ଷେତ୍ରକୁ ଆଗମନ କରିବା ପୂର୍ବରୁ ଆର୍ଯ୍ୟେତର ସଂପ୍ରଦାୟର ଲୋକମାନେ ଏ ଅଞ୍ଚଳରେ ଶତ ଶତ ବର୍ଷ ଧରି ପୁରୁଷାନୁକ୍ରମେ ସ୍ଥାୟୀଭାବେ ବସବାସ କରି ଆସୁଥିଲେ ଓ ସେମାନଙ୍କର ସଭ୍ୟତା, ସଂସ୍କୃତି ଯଥେଷ୍ଟ ବିକାଶ ଲାଭ କରିଥିଲା । ସେହି ଆର୍ଯ୍ୟେତର ସଂପ୍ରଦାୟର ଲୋକମାନେ ଲିଂଗ, ଯୋନି, ସର୍ପ ଆଦିର ପୂଜା ଓ ପିତୃ ପୁରୁଷଙ୍କ ସହ ଦେବୀ ଆରାଧନା କରୁଥିଲେ । କାରଣ ଆର୍ଯ୍ୟେତର ଲୋକ ମନେ ଏ ପ୍ରକାର ପୂଜା ଆରାଧନା କରୁଥିବାର ନିଦର୍ଶନ ଭାରତର ବିଭିନ୍ନ ଅଞ୍ଚଳରୁ ମିଳିଅଛି । ବେଦରୁ ପ୍ରମାଣ ମିଳେ ଯେ ଆର୍ଯ୍ୟ ଓ ଆର୍ଯ୍ୟତର ଗୋଷ୍ଠୀର ଲୋକମାନଙ୍କ ମଧ୍ୟରେ ଧର୍ମ ବିଶ୍ୱାସ ଆଦିକୁ ନେଇ ତୀବ୍ର ମତ ଭେଦ ଓ ଶତ୍ରୁତା ରହିଥିଲା । ବୈଦିକ ଯୁଗରେ ଆର୍ଯ୍ୟମାନେ ଆର୍ଯ୍ୟାବର୍ତ୍ତ ମଧ୍ୟରେ ବସବାସ କରୁଥିଲେ । ଏହାର ଉତ୍ତରରେ ହିମାଳୟ, ଦକ୍ଷିଣରେ ବିନ୍ଧ୍ୟ ପର୍ବତ, ପୂର୍ବରେ ଆରାବଦ୍ ସମୁଦ୍ର ଓ ପଶ୍ଚିମରେ ଥିଲା ପରାବଦ୍ ସମୁଦ୍ର । ମନୁ ସଂହିତାରେ ଏହାକୁ ସରସ୍ୱତୀ ଓ ଦୃଷଦ୍‌ବତୀ ମଧ୍ୟବର୍ତ୍ତୀ ବ୍ରହ୍ମାବର୍ତ୍ତ ବୋଲି କୁହାଯାଇଛି ।

ଯାଜପୁରର ଅଗସ୍ତିବନ, ଅଗସ୍ତି ପଡ଼ିଆ ଓ ଅଗସ୍ତେଶ୍ୱର ମହାଦେବଙ୍କ ନାମକରଣର ମୂଳରେ ଋଷି ଅଗସ୍ତ୍ୟଙ୍କର ସ୍ମୃତି ଜଡ଼ିତ । ସେହିପରି ବିରଜାଙ୍କୁ ବିନ୍ଧ୍ୟ ବାସିନୀ କୁହାଯିବା ମୂଳରେ ଅଗସ୍ତ୍ୟ ଓ ଲୋପାମୁଦ୍ରା ବିନ୍ଧ୍ୟ ଅତିକ୍ରମ କରି ଏ ଅଂଚଳକୁ



Digitized by PPRACHIN, SOA

ଆସିଥିବାର ପ୍ରମାଣ ମିଳେ । ବିରଜା ମହାତ୍ମ୍ୟର ବର୍ଣ୍ଣନାରେ ଅଗସ୍ତ୍ୟଙ୍କର ଦ୍ୱାରା ପୂଜିତ ଶିବଲିଙ୍ଗ ଯାଜପୁରର ଅଗସ୍ତେଶ୍ୱର ମହାଦେବ ।

ସମ୍ଭବତଃ ଅଗସ୍ତ୍ୟ ଓ ଲୋପାମୁଦ୍ରା ପ୍ରାଚୀନ ବିରଜା କ୍ଷେତ୍ରରେ କିଛିକାଳ ଅବସ୍ଥାନ କରି ଏହି ଅଞ୍ଚଳର ଆର୍ଯ୍ୟେତର ଲୋକମାନଙ୍କୁ ଆର୍ଯ୍ୟ ସଂସ୍କୃତିର ଯାଗ ଯଜ୍ଞ ଇତ୍ୟାଦି ସମ୍ପର୍କରେ ସଚେତନ କରାଇଥିଲେ । ଯାହାଫଳରେ ଏ କ୍ଷେତ୍ରରେ ଆର୍ଯ୍ୟ ଓ ଆର୍ଯ୍ୟେତର ସଂସ୍କୃତିର ସମନ୍ୱୟ ସମ୍ଭବ ହୋଇ ପାରିଥିଲା । ଆର୍ଯ୍ୟେତର ଲୋକମାନଙ୍କ ମଧ୍ୟରେ ସଂହତି ଓ ଏକତା ସ୍ଥାପନ ଉଦ୍ଦେଶ୍ୟରେ ଲିଙ୍ଗ, ଯୋନି ଓ ସର୍ପ ପୂଜାକୁ ଏକତ୍ରୀତ ପୂର୍ବକ ଆର୍ଯ୍ୟ ଋଷିମାନେ ବୈଦିକ ଦେବତା ଗଣେଶ ଓ ଚନ୍ଦ୍ରଙ୍କୁ ମଧ୍ୟ ସ୍ଥାପନା କରିଥିବାର ଅନୁମାନ କରାଯାଏ ।

ଦେବୀ ଭାଗବତର ଦଶମ ସ୍କନ୍ଧ ସପ୍ତମ ଅଧ୍ୟାୟରେ ବର୍ଣ୍ଣିତ ଅଛି ଯେ ଦେବୀ ଲୋପାମୁଦ୍ରା ବ୍ରହ୍ମାଙ୍କର ମାନସଜାତ ରାଜା ସ୍ୱାୟମ୍ଭୂବ ମନୁଙ୍କ ଦ୍ୱାରା ପୂଜିତା ହେଲେ ଓ କାଳକ୍ରମେ ବିରଜା ନାମ ଧାରଣ କଲେ ।

ଅନ୍ୟତ୍ର ଉଲ୍ଲେଖ ଅଛି ଯେ ମନୁ କ୍ଷୀରସିନ୍ଧୁ ନିକଟରେ ଦେବୀଙ୍କର ମୃଣ୍ମୟୀ ମୂର୍ତ୍ତି ସ୍ଥାପନା କରି ଆରାଧନା କରିଥିଲେ ଓ ଦେବୀଙ୍କଠାରୁ ବରପ୍ରାପ୍ତ ହୋଇଥିଲେ । ଏହି ମୃଣ୍ମୟୀ ଦେବୀ ହେଉଛନ୍ତି ବିରଜା । ଦେବୀ ବିରଜା ପ୍ରଥମେ ମୃଣ୍ମୟୀ ମୂର୍ତ୍ତିରେ ସ୍ଥାପିତ ହୋଇଥିଲେ । ଋଷି ଅଗସ୍ତ୍ୟ ଓ ଲୋପାମୁଦ୍ରା ଆର୍ଯ୍ୟୋତର ଦେବୀ ଉପାସନାର ସଂସ୍କାର କରି ବିରଜାଙ୍କ ମସ୍ତକରେ ଲିଙ୍ଗ, ଯୋନି, ନାଗ, ଗଣେଶ ଓ ଚନ୍ଦ୍ରଙ୍କର ପ୍ରତିକ ମୁଦ୍ରା ସଂଯୋଗ ପୂର୍ବକ ମୂର୍ତ୍ତି ସ୍ଥାପନା କରିଥିଲେ ଏବଂ ସେହି ମୂର୍ତ୍ତି ପ୍ରତିଷ୍ଠା କାଳରେ ପୀଠ ସ୍ଥଳିରେ ବିରାଟ ଆକାରରେ ଏକ ଯଜ୍ଞ ସ୍ୱୟଂ ଅଗସ୍ତ୍ୟ ଋଷିଙ୍କ ପୌରହିତ୍ୟରେ ଅନୁଷ୍ଠିତ ହୋଇଥିଲା । ତେଣୁ ଯଜ୍ଞ କୁଣ୍ଡରୁ ବିରଜାଙ୍କର ଜନ୍ମବୋଲି ପୁରାଣରେ ବର୍ଣ୍ଣିତ ହୋଇଛି ।

ଦେବୀଙ୍କର ବିଦ୍ୟମାନ ମୂର୍ତ୍ତି ଗୁପ୍ତଯୁଗ ବା ତତ୍‌ପୂର୍ବରୁ ପ୍ରତିଷ୍ଠା ହୋଇଛି ବୋଲି ଗବେଷକମାନେ ମତ ଦେଉଛନ୍ତି । ବିରଜାଙ୍କ ମୂର୍ତ୍ତିର ପ୍ରାଚୀନତା ସମ୍ବନ୍ଧରେ ସ୍ୱର୍ଗତ ଐତିହାସିକ ରମା ପ୍ରସାଦ ଚନ୍ଦ ଲେଖିଛନ୍ତି ।

''ଉପାସକ କଳ୍ପିତ ଦୁର୍ଗା ବିଗ୍ରହମାନଙ୍କ ମଧ୍ୟରେ ଉକ୍ତ ଦୁର୍ଗା ବିଗ୍ରହ ପ୍ରାଚୀନତମ । ଉକ୍ତ ବିରଜା ମୂର୍ତ୍ତି ଦେବୀ ପୂଜା ପଦ୍ଧତିର ସର୍ବାଦ୍ୟ ମୂର୍ତ୍ତିମନ୍ତ ସ୍ୱରୂପ । ଏହି କାରଣରୁ ଯାଜପୁରକୁ ବିରଜା ବା ଦୁର୍ଗା ପୂଜାର ଏକ ପ୍ରାଚୀନତମ କେନ୍ଦ୍ରରୂପେ ନିର୍ଦ୍ଧାରିତ କରାଯାଇପାରେ ।''

ସୁତରାଂ ଭାରତର ଦୁର୍ଗା ବିଗ୍ରହମାନଙ୍କ ମଧ୍ୟରେ ଦେବୀ ବିରଜାଙ୍କର ବିଗ୍ରହ ସର୍ବ ପ୍ରାଚୀନ । ବୈଦିକ ଓ ତାନ୍ତ୍ରିକ ବିଧିରେ ଦେବୀଙ୍କର ପୂଜା ଅର୍ଚ୍ଚନା କରାଯାଇଥାଏ । ବିରଜାଙ୍କର ପୂଜା ଓ ମୁଖ୍ୟ ପର୍ବ ଆଶ୍ୱୀନ ମାସରେ ଦୁର୍ଗା ପୂଜା ଅବସରରେ ପାଳିତ ହୁଏ । ଏହି ସମୟରେ ଦେବୀଙ୍କର ରଥ ଭ୍ରମଣ ଭାରତରେ ଅନ୍ୟ କୌଣସି ଦେବୀ ପୀଠରେ ଦେଖାଯାଏ ନାହିଁ । ଅମାବାସ୍ୟା ଦିନ ରଥ ଅଧିବାସ ପରେ ପ୍ରତିପଦ ଦିନ ରଥ ପ୍ରତିଷ୍ଠା କରାଯାଇ ଦେବୀଙ୍କ ବିଜେ ପ୍ରତିମାକୁ ରଥାରୂଢ଼ କରାଯାଏ । ସେହି ଦିନଠାରୁ



Digitized by PPRACHIN, SOA

ମହାନବମୀ ପର୍ଯ୍ୟନ୍ତ ରଥ ମନ୍ଦିର ଚତୁଃପାର୍ଶ୍ୱରେ ନଅଥର ପରିକ୍ରମା କରେ । କପିଳ ସଂହିତା ଅନୁସାରେ ମା' ବିରଜାଙ୍କୁ ରଥ ଉପରେ ଦର୍ଶନ କଲେ ପଞ୍ଚ ପାତକରୁ ମୁକ୍ତି ମିଳେ । ଯଥା :-

ଯେ ପଶ୍ୟନ୍ତି ରଥା ରୂଢ଼ଂ ଭ୍ରମନ୍ତି ମମ୍ବିକାଂ ପୁନଃ ।
ତେ ପଞ୍ଚପାତକୈର୍ମୁକ୍ତା ଯାନ୍ତି ତସ୍ୟା ସ୍ୱରୂପତାମ୍ ।।

ମା' ବିରଜା ଦୈନନ୍ଦିନ ଏକାକ୍ଷର ମନ୍ତ୍ରରେ ପୂଜା ପାଉଥିଲେ ମଧ ଦୁର୍ଗାପୂଜା ସମୟରେ ମୂଳାଷ୍ଟମୀଠାରୁ ମହାଷ୍ଟମୀ ପର୍ଯ୍ୟନ୍ତ ବନଦୁର୍ଗା ମନ୍ତ୍ରରେ, ମହାଷ୍ଟମୀ ଅର୍ଦ୍ଧ ରାତ୍ରରୁ ପ୍ରଭାତ ପର୍ଯ୍ୟନ୍ତ ଉଗ୍ରଚଣ୍ଡୀ ମନ୍ତ୍ରରେ, ମହାନବମୀ ଦିନ ମହାମାରୀ ମନ୍ତ୍ରରେ ଏବଂ ଦଶହରା ଦିନ ଅପରାଜିତା ମନ୍ତ୍ରରେ ପୂଜା ପାଆନ୍ତି । ମାଘ ମାସ ତ୍ରିବେଣୀ ଅମାବାସ୍ୟା ତିଥିରେ ସ୍ୱନକ୍ଷତ୍ର ଉପଲକ୍ଷେ ସାବିତ୍ରୀ ମନ୍ତ୍ରରେ ଦେବୀଙ୍କୁ ପୂଜା କରାଯାଏ । ଦେବୀଙ୍କର ପୂଜା ପଦ୍ଧତି ସମ୍ପର୍କରେ ବହୁ ତଥ୍ୟ ଓ ତତ୍ତ୍ୱ ଏ ଅବଧି ଲୋକ ଲୋଚନକୁ ଆସିପାରି ନାହିଁ । ବିରଜାଙ୍କର ସଂସ୍କୃତି ଯାଜପୁରର ଇତିହାସ ଓ ସଂସ୍କୃତିକୁ ସମୃଦ୍ଧ କରିଛି ଏହା ନିଃସନ୍ଦେହ । ପୁରାଣମାନଙ୍କରେ କାଶୀତୀର୍ଥ ଓ ପୁରୁଷୋତ୍ତମ ତୀର୍ଥ ଅପେକ୍ଷା ବିରଜା ତୀର୍ଥକୁ ଅଧିକ ପ୍ରାଧାନ୍ୟ ଦିଆଯାଇ କୁହାଯାଇଛି ଯେ ଅଷ୍ଟ ଯୁଗ କାଶୀରେ ରହିଲେ ଯେଉଁଫଳ ମିଳେ, ପୁରୁଷୋତ୍ତମ କ୍ଷେତ୍ରରେ ଦିନେ ରହିଲେ ସେହି ଫଳ ମିଳେ, ମାତ୍ର ବିରଜାଙ୍କ ଦର୍ଶନରେ ତାର କୋଟି ଗୁଣ ଫଳ ମିଳେ ।

ଯୁଗାନ୍ୟଷ୍ଟୌ କାଶୀବାସେ ଦିନୈକ ପୁରୁଷୋତ୍ତମେ
ତଦେବ କୋଟି ଗୁଣିତଂ ବିରଜା ମୁଖ ଦର୍ଶନେ ।



ନଗରପାଳ
ଯାଜପୁର ପୌରପାଳିକା

**ଯାଜପୁର : ମା ବିରଜା ଦେବୀଙ୍କ ଲାଗି ସୁପ୍ରସିଦ୍ଧ । ବିରଜାଙ୍କ ସଂପର୍କରେ ଅଧିକ ତଥ୍ୟ ପ୍ରଦାନ କରାଯାଇ ନ ପାରିଲେ ସମଗ୍ର ଜିଲ୍ଲାର ପୌରାଣିକ ଭିତ୍ତିଭୂମି ସଂପର୍କରେ ତଥ୍ୟ ବା ସୂଚନା ପ୍ରଦାନ ଅସମ୍ପୂର୍ଣ୍ଣ ରହିଯିବ ବୋଲି ବିଚାର କରି ତଥ୍ୟ ଭିତ୍ତିକ ଉକ୍ତ ପ୍ରବନ୍ଧଟି ପ୍ରକାଶ କଲୁ । (ସଂପାଦକ)**



Digitized by PPRACHIN, SOA

# ଯୁଗେଯୁଗେ ଯାଜପୁର

✤ ପ୍ରିୟନାଥ ମହାପାତ୍ର

ଧାର୍ମିକ, ଐତିହାସିକ, ପୌରାଣିକ ଏବଂ ରାଜନୈତିକ ପୀଠ ସ୍ଥଳୀ ହେଉଛି ଯାଜପୁର । ଯୁଗେ ଯୁଗେ ଯାଜପୁର ଯୁଗ ସହିତ ତାଳ ଦେଇ ତାର ଐତିହ ଓ ପରମ୍ପରାକୁ ବଜାୟ ରଖିଛି । ଯାଜପୁର ବିରଜା କ୍ଷେତ୍ର ନାମରେ ପରିଚିତ । ଯାଜପୁରର ପ୍ରକୃତ ଶବ୍ଦଟି ହେଉଛି ଯାଜିପୁର ବୋଲି ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷା କୋଷରେ ଉଲ୍ଲେଖ ରହିଛି । ଯାଜିପୁରର ଆକ୍ଷରିକ ଅର୍ଥ ହେଉଛି ଯାଗକାରୀ (ଯାଜୀ) ବ୍ରାହ୍ମଣମାନଙ୍କର ପୁର ବା ବାସସ୍ଥାନ ।

ଦେବୀ ବିରଜାଙ୍କୁ ବାଦଦେଲେ ଯାଜପୁର ଅସ୍ତିତ୍ୱ କଳନା କରାଯାଇ ନ ପାରେ । ବିରଜା ଶବ୍ଦର ଅର୍ଥ ବହୁଳ ଭାବରେ କରାଯାଇଛି । ବିଗତ ହୋଇଛି ରଜୋଗୁଣ ଯାହାର ସେ ବିରଜା । ଅର୍ଥାତ୍ ସତ୍ୱ, ରଜ ଓ ତମଗୁଣ ମଧ୍ୟରୁ ରଜ ଗୁଣର ବିଲୋପରେ କେବଳ ସତ୍ୱ ଗୁଣରେ ଆଧାରୀତ ହୋଇଥିବାରୁ ତାଙ୍କୁ ବିରଜା କୁହାଯାଏ । ସେ ଶୁଦ୍ଧା, ପବିତ୍ରା ଏବଂ ବୈଷ୍ଣବୀ । ସେ ସୃଷ୍ଟି ଏବଂ ବିନାଶର ହେତୁ ବୋଲି କୁହାଯାଏ । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ତାଙ୍କ ବୈଦେହୀଶବିଳାସ କାବ୍ୟରେ ଲେଖିଥିଲେ–

ବିରଜା ମଣ୍ଡଳେ ତପସ୍ୟା କୃତ
ବ୍ରହ୍ମାର ପରେ ସେ ଜଗତ ଜିତ ।

ବିରଜା ମଣ୍ଡଳରେ ରାବଣ ବ୍ରହ୍ମାଙ୍କୁ ତପସ୍ୟା କରି ଜଗତ ଓ ବିଶ୍ୱ ବ୍ରହ୍ମାଣ୍ଡକୁ ଜୟ କରିବା ପାଇଁ ଏହିଠାରେ ହିଁ ବରପ୍ରାପ୍ତି ହୋଇଥିଲେ । ପୌରାଣିକ ମତ ଅନୁଯାୟୀ ସୃଷ୍ଟିକର୍ତ୍ତା ବ୍ରହ୍ମା ଏଠାରେ ବରାହନାଥଙ୍କୁ ପ୍ରତିଷ୍ଠା କରି ଅଶ୍ୱମେଧ ଯଜ୍ଞ ଶେଷ କରିଥିଲେ । ପରବର୍ତ୍ତୀ କାଳରେ ସମ୍ରାଟ ଯଯାତି ଏଠାରେ ଦଶାଶ୍ୱମେଧ ଯଜ୍ଞ କରି ନିଜକୁ ଦିଗ୍‌ବିଜୟୀ ସମ୍ରାଟ ଭାବରେ ପ୍ରତିପାଦନ କରିଥିଲେ । ମହାଭାରତ, ରାମାୟଣ, କପିଳ ସଂହିତା, ବୌଦ୍ଧ ଧର୍ମର ଧର୍ମଗ୍ରନ୍ଥ ତ୍ରିପିଟକଠାରୁ ଆରମ୍ଭ କରି ଓଡ଼ିଶାର ଶେଷ ସ୍ୱାଧୀନ ହିନ୍ଦୁ ରାଜା ମୁକୁନ୍ଦ ଦେବ ଦେଶ ପାଇଁ ଯୁଦ୍ଧ କରି ଏହି ଯାଜପୁର ମାଟିର ଗୋହିରା ଟିକିରି ଠାରେ ପ୍ରାଣବଳୀ ଦେବା ଘଟଣା ଇତିହାସ ତା'ର ବକ୍ଷରେ ସାଇତି ରଖିଛି । ଯାଜପୁର ଯେ ଭାରତ ବର୍ଷର ଏକ ଶ୍ରେଷ୍ଠ ଅଞ୍ଚଳ ଏ କଥାକୁ ବିରଜା ମାଟିର ସନ୍ତାନମାନଙ୍କୁ ଚେତାଇ ଦେବାହିଁ ଏହି ଲେଖକର ସମ୍ୟକ ଉଦ୍ୟମ । ସାଂସ୍କୃତିକ ଦୃଷ୍ଟି କୋଣରୁ ଓଡ଼ିଶାକୁ ଦୁଇଟି ମଣ୍ଡଳ ଭାବରେ ଅଭିହିତ କରାଯାଇଥାଏ । ଗୋଟିଏ ଶ୍ରୀକ୍ଷେତ୍ର ମଣ୍ଡଳ ଏବଂ



Digitized by PPRACHIN, SOA

ଅନ୍ୟଟି ବିରଜା ମଣ୍ଡଳ । ଏପର୍ଯ୍ୟନ୍ତ ମଧ୍ୟ ଏହି ଦୁଇଟି ମଣ୍ଡଳ ପାଇଁ ଦୁଇ ପ୍ରକାର ପାଞ୍ଜି ବ୍ୟବହାର କରାଯାଉଛି । ଯଥା :- ଜଗନ୍ନାଥ ପାଞ୍ଜି ଓ ବିରଜା ପାଞ୍ଜି । ଏହି ଅନୁଯାୟୀ ବିବାହ ବ୍ରତ, ଗୃହ ପ୍ରତିଷ୍ଠାଠାରୁ ଆରମ୍ଭ କରି ଶୁଭ ଅଶୁଭ ଫଳ ଆଦି କଳନା କରାଯାଇଥାଏ । ଓଡ଼ିଶାର ପ୍ରାଚୀନତମ ନାମ ଥିଲା କଳିଙ୍ଗ । ଯାଜପୁର ଏହି କଳିଙ୍ଗ ରାଜ୍ୟରେ ଥିଲା ବୋଲି ମହାଭାରତରେ ଲୋମଶ ମୁନି ଯୁଧିଷ୍ଠିରଙ୍କୁ କହିଛନ୍ତି । ମହାଭାରତ ଯୁଗରେ ମଧ୍ୟ ବୈତରଣୀ ନଦୀ କଳିଙ୍ଗ ରାଜ୍ୟ ମଧ୍ୟରେ ପ୍ରବାହିତ ହେଉଥିଲା । ବୈତରଣୀ ନଦୀ କୂଳରେ ଏହି ବିରଜା ଭୂମି ଅବସ୍ଥିତ । ଖ୍ରୀ.ପୂ. ୨୬୧ରେ ସମ୍ରାଟ ଅଶୋକ କଳିଙ୍ଗ ଆକ୍ରମଣ ସମୟରେ ଏହି ଦେଶର ନାମ ଯେ କଳିଙ୍ଗ ଥିଲା ଏଥିରୁ ଜଣାଯାଏ । ଖ୍ରୀଷ୍ଟାବ୍ଦ ତୃତୀୟ ଶତାବ୍ଦୀ ପର୍ଯ୍ୟନ୍ତ କଳିଙ୍ଗ ରାଜ୍ୟ ଥିଲେ ମଧ୍ୟ ଚତୁର୍ଥ ପଞ୍ଚମ ଶତାବ୍ଦୀ ବେଳକୁ ଏହାର ନାମ କଳିଙ୍ଗ ପରିବର୍ତ୍ତେ ଉତ୍କଳ ହୋଇଥିଲା । ଗୁପ୍ତ ଯୁଗକୁ ଇତିହାସରେ ସୁବର୍ଣ୍ଣ ଯୁଗ ବୋଲି କୁହାଯାଏ । ଚନ୍ଦ୍ରଗୁପ୍ତଙ୍କ ରାଜ୍ୟସଭାରେ ବିକ୍ରମାଦିତ୍ୟ, କାଳିଦାସ ପ୍ରଭୃତି ନବପଣ୍ଡିତ ରାଜସଭା ମଣ୍ଡନ କରୁଥିଲେ । ମହାକବି କାଳିଦାସ ତାଙ୍କର ମହାକାବ୍ୟ ରଘୁବଂଶର ଚତୁର୍ଥ ସର୍ଗରେ ଏହି ଭୂମିର ନାମ ଉତ୍କଳ ବୋଲି ବର୍ଣ୍ଣନା କରିଛନ୍ତି । ଅବଶ୍ୟ ଉତ୍କଳ ନାମଟି ପ୍ରଚଳିତ ହେବାବେଳେ କଳିଙ୍ଗ ନାମଟି ଲୋପ ପାଇ ନ ଥିଲା । କଳିଙ୍ଗରୁ ଉତ୍କଳ, ଉତ୍କଳରୁ ଉଡ୍ର ଓ ଉଡ୍ରରୁ ଓଡ଼ିଶା ସମୟାନୁକ୍ରମେ ନାମ ପରିବର୍ତ୍ତନ ହୋଇଥିଲେ ମଧ୍ୟ ଏ ଯାବତ୍ ଏହାର ପ୍ରାଚୀନ ନାମ କଳିଙ୍ଗ ହୋଇ ରହିଛି । ବିରଜା ଭୂଇଁ ଏହି ଓଡ଼ିଶାର ଏକ ପ୍ରମୁଖ ଅଞ୍ଚଳ । ଶାରଳା ଦାସ ତାଙ୍କ ମହାଭାରତର ଆଦିପର୍ବରେ ଲେଖିଛନ୍ତି ଯେ–

"ଜମ୍ବୁଦ୍ୱୀପ ଭରତଖଣ୍ଡ ଓଡ୍ରରାଷ୍ଟ୍ର ମଣ୍ଡଳରେ
ଉପଳେଶ୍ୱର ଲିଙ୍ଗ ଚିତ୍ରଉତ୍ପଳା ଦକ୍ଷିଣ କୂଳରେ ।
ଜୟନ୍ତାର ନିଜ ଭୂମି ଯାଜନର ନିକଟେ ଦକ୍ଷିଣ ବାରଣାସି
କୁଶସ୍ଥଳି ଭୂମି ଦ୍ୱାରକା ଯେ କ୍ଷେତ୍ର ପୂଣ୍ୟ ବାସୀ ।"

ଏଥିରୁ ଜଣାଯାଏ ଯେ ବିରଜାଙ୍କର ନିଜଭୂମି ଅର୍ଥାତ୍ ଯାଜନଗ୍ର ମଣ୍ଡଳ ଚିତ୍ରୋତ୍ପଳା ନଦୀ କୂଳଠାରୁ କଟକ ପର୍ଯ୍ୟନ୍ତ ବ୍ୟାପ୍ତ ଥିଲା । ପ୍ରାୟତଃ ମହାନଦୀ ହିଁ ବିରଜା ମଣ୍ଡଳ ଓ ଜଗନ୍ନାଥ ମଣ୍ଡଳର ସୀମାରେଖା ଥିଲା । ବର୍ତ୍ତମାନର ବାଲେଶ୍ୱର କେନ୍ଦୁଝର, ମୟୂରଭଞ୍ଜ ଆଦି ଅଞ୍ଚଳରେ ଏ ପର୍ଯ୍ୟନ୍ତ ବିରଜାପାଞ୍ଜି ପ୍ରଚଳିତ ଥିବାରୁ ଏହା ବିରଜା ମଣ୍ଡଳ ନାମରେ ନାମିତ ହୋଇଅଛି ।

ଏଥିରୁ ଜଣାଯାଏ ଯେ ଦେବୀ ବିରଜା ଏବଂ ବିରଜା ଭୂମି ସର୍ବପ୍ରାଚୀନ ତୀର୍ଥକ୍ଷେତ୍ର ଓ ସର୍ବପ୍ରାଚୀନ ସାଂସ୍କୃତିକ କ୍ଷେତ୍ର ।

ଯାଜପୁର ନାମ ପ୍ରଥମେ ବିରଜା ଥିଲା । ପ୍ରାୟ ଦଶମ ଶତାବ୍ଦୀ ବେଳକୁ ସୋମବଂଶୀ କେଶରୀ ରାଜା ଏହାର ନାମ ଯଯାତି ନଗର ଦେଇଥିଲେ । କିନ୍ତୁ ପ୍ରଥମେ ଏହି ରାଜାଙ୍କର ରାଜଧାନୀ ବିନିତ୍ପୁର ଥିଲା । ଯଯାତିଙ୍କ ଅମଳରେ ତାଙ୍କର ଏ



Digitized by PPRACHIN, SOA

ରାଜଧାନୀର ନାମ ଯଯାତି ନଗର ବୋଲି କୁହାଗଲା । କିନ୍ତୁ ପ୍ରଥମ ଯଯାତି ଓଡ଼ିଶାକୁ ଦଖଲ କଲାପରେ ଯାଜପୁରଠାରେ ସ୍ଥାପିତ ତାଙ୍କ ରାଜଧାନୀକୁ ଅଭିନବ ଯଯାତି ନଗର ବୋଲି କୁହାଗଲା । ମାଦଳା ପାଞ୍ଜିରେ ଯାଜପୁରର ନାମ ଅଭିନବ ଯଯାତି ନଗର ବୋଲି ଉଲ୍ଲେଖ ହୋଇଅଛି । ପ୍ରାୟ ୧୧୧୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ସୋମବଂଶୀ କେଶରୀରାଜାମାନଙ୍କର ରାଜତ୍ୱ ଲୋପପାଇବା ପର୍ଯ୍ୟନ୍ତ ଏହାର ନାମ ଯଯାତି ନଗର ଥିଲା । ଗଙ୍ଗରାଜା ତୃତୀୟ ଅନଙ୍ଗଭୀମଦେବଙ୍କ ରାଜତ୍ୱ ବେଳକୁ ସେ ମଧ୍ୟ ଏହାକୁ ନିଜର ରାଜଧାନୀ କରିଥିଲେ । ଯାଜପୁର ଓଡ଼ିଶାର ଦୁଇଟି ପ୍ରଧାନ ରାଜବଂଶର ରାଜଧାନୀ ହୋଇ ରହିବା ପରେ ଯାଜପୁର କହିଲେ ସମଗ୍ର ଓଡ଼ିଶାକୁ ବୁଝାଉ ଥିଲା । ମୁସଲମାନ ଐତିହାସିକକାରମାନେ ଯଯାତିନଗରକୁ ଯାଜନଗର ଭାବରେ ବର୍ଣ୍ଣିତ କରିଛନ୍ତି ।

ମହାଭାରତରେ ଶ୍ରୀକ୍ଷେତ୍ର ପୁରୀ କିମ୍ବା ଅନ୍ୟ କୌଣସି ତୀର୍ଥକ୍ଷେତ୍ର ସମ୍ବନ୍ଧରେ ବିବରଣୀ ନ ଥିବାବେଳେ ବିରଜାକ୍ଷେତ୍ର ଯାଜପୁର ସମ୍ପର୍କରେ ବହୁଳ ବିବରଣୀ ଦେଖିବାକୁ ମିଳେ । ମହାଭାରତ ୧୧୪ ତମ ସମସ୍ତ ଅଧ୍ୟାୟରେ ପ୍ରାୟ ୩୦ ଟି ଶ୍ଳୋକରେ କେବଳ ଏହି ବିରଜା କ୍ଷେତ୍ରର ମାହାତ୍ମ୍ୟ ବର୍ଣ୍ଣିତ ହୋଇଛି । ଏଥିରୁ ପ୍ରମାଣିତ ହୁଏ ଯେ ମହାଭାରତ ରଚନାର ବହୁ ପୂର୍ବରୁ ବିରଜା କ୍ଷେତ୍ର ଯାଜପୁର ପ୍ରସିଦ୍ଧିଲାଭ କରିଥିଲା ।

ବିରଜା କ୍ଷେତ୍ରରେ କାହିଁକି ପିଣ୍ଡଦାନ କରାଯାଏ ସେ ସମ୍ପର୍କରେ ବାୟୁପୁରାଣ ଓ ହରିବଂଶରୁ କେତେକ ସୂଚନା ମିଳିଥାଏ । ବିରଜା ହେଉଛନ୍ତି ଆର୍ଯ୍ୟପାର ପିତୃଗଣଙ୍କ ମାନସୀ କନ୍ୟା, ଯଯାତିଙ୍କ ଜନନୀ ଏବଂ ରାଜା ନହୁଷଙ୍କ ପତ୍ନୀ । ତେଣୁ ପିଣ୍ଡଦାନ କଲେ ପିତୃଗଣ ତାହା ପାଆନ୍ତି ବୋଲି ଏ ପର୍ଯ୍ୟନ୍ତ ବିଶ୍ୱାସ ରହିଛି ।

ଏକ ବୌଦ୍ଧ ଗ୍ରନ୍ଥରୁ ଜଣାଯାଏ ଯେ ଗୌତମ ବୁଦ୍ଧ ତାଙ୍କର ପ୍ରିୟଶିଷ୍ୟ ସାରୀପୁତ୍ରଙ୍କୁ କହିଛନ୍ତି ଯେ ସେ ଭବିଷ୍ୟତରେ ପୁଣି ମର୍ତ୍ତ୍ୟଧାମରେ ଜନ୍ମଗ୍ରହଣ କରିବେ ଏବଂ ତାଙ୍କ ଜନ୍ମସ୍ଥାନ ହେବ ବିରଜା ବା ଯାଜପୁର ।

ଯାଜପୁର ଓ ଯଯାତିଙ୍କ ଓଡ଼ିଶା ବହୁ କିମ୍ବଦନ୍ତୀ ଓ କଳାସ୍ଥାପତ୍ୟରେ ସ୍ଥାନିତ ହୋଇଛି । ସେ ସମୟରେ ଯଯାତି କେଶରୀ ଯାଜପୁରରେ ଦଶାଶ୍ୱମେଧ ଯଜ୍ଞ କରିବା ପାଇଁ କାନ୍ୟକୁବ୍ଜରୁ ଦଶସହସ୍ର ବ୍ରାହ୍ମଣ ଆଣିଥିଲେ । ସେ ସମୟରେ ଯେଉଁ ରାଜାମାନେ ବ୍ରାହ୍ମଣମାନଙ୍କୁ ଭୂମିଦାନ କରୁଥିଲେ ଓ ଯାଗଯଜ୍ଞ କରୁଥିଲେ ସେମାନଙ୍କୁ ଆଦର୍ଶ ରାଜା ଭାବରେ ଗ୍ରହଣ କରାଯାଉଥିଲା । ସଂସ୍କୃତ ମହାଭାରତରେ କୁହାଯାଇଛି ଯେ ଯାଜପୁରକୁ ଗଲେ ଗୋସହସ୍ର ଦାନର ଫଳମିଳେ । ମାତ୍ର ରାଜା କୃଷ୍ଣସିଂହ ରଚନା କରିଥିବା ଏକ ମହାଭାରତରେ ବର୍ଣ୍ଣନା କରିଛନ୍ତି ଯେ ଯାଜପୁରକୁ ଗଲେ ଅଶ୍ୱମେଧ ଯଜ୍ଞର ଫଳ ମିଳେ ।

ପ୍ରଥମ ଯଯାତିଙ୍କ ପରେ ଭୀମ ରଥ, ଧର୍ମ ରଥ, ନହୁଷ, କୋଶଳ ଉତ୍କଳ ରାଜା ହୋଇଥିଲେ । ଏହି ସମୟରେ ଯାଜପୁର ଯଯାତି ନଗର ନାମ ବହନ କରି



Digitized by PPRACHIN, SOA

ଉତ୍କଳର ରାଜଧାନୀ ହୋଇରହିଥିଲା । ୧୦୨୫ ଖୀଷ୍ଟାବ୍ଦରେ ସୋମ ବଂଶର ସ୍ଥାପୟିତା ଜନ୍ମେଜୟଙ୍କ ସମ୍ପର୍କୀୟ ରାଜା ମନ୍ତ୍ରିମଣ୍ଡଳ ଓ ପ୍ରଜାମାନଙ୍କଦ୍ୱାରା ମନୋନୀତ ହୋଇ ରାଜା ହୋଇଥିଲେ ଓ ନିଜକୁ ଦ୍ୱିତୀୟ ଯଯାତି ଭାବରେ ଘୋଷଣା କରିଥିଲେ । ଏହାପରେ ଉଦ୍ୟୋତ କେଶରୀ, ଦ୍ୱିତୀୟ ଜନ୍ମେଜୟ ପୁରଂଜୟ ଓ କର୍ଣ୍ଣ ଯଥାକ୍ରମେ ଏଠାରେ ରାଜତ୍ୱ କରିଥିଲେ ।

କର୍ଣ୍ଣଦେବଙ୍କର ରାଜତ୍ୱ କାଳରେ ଗଙ୍ଗ ବଂଶୀ ରାଜା ଅନନ୍ତ ବର୍ମଣ ଚୋଡଗଙ୍ଗ ସୋମବଂଶୀ ରାଜ୍ୟ ଆକ୍ରମଣ କରି ୧୧୧୦ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଦଖଲ କଲେ । ଫଳରେ ଓଡ଼ିଶାରେ ସୋମବଂଶୀ କେଶରୀ ମାନଙ୍କର ପତନ ଘଟିଲା । ଗଙ୍ଗ ବଂଶର ରାଜା ନିଜ ରାଜଧାନୀକୁ ଯାଜପୁରରୁ କଟକ ଉଠାଇ ଆଣିଥିଲେ । ଫଳରେ ଯାଜପୁରର ପ୍ରାଧାନ୍ୟ କମିଯାଇଥିଲା । କିନ୍ତୁ ଯାଜପୁରର ମା' ବିରଜାଙ୍କ ପ୍ରାଧାନ୍ୟ ପୂର୍ବପରି ରହିଥିଲା ।

ବର୍ତ୍ତମାନ ଯାଜପୁରରେ ଯେଉଁ ବିରଜା ମନ୍ଦିର ଅଛି ଏହା ପ୍ରକୃତରେ ପ୍ରାଚୀନ ମନ୍ଦିର ନୁହେଁ । ପ୍ରାୟ ୧୨୫ ବର୍ଷ ତଳେ ଏହି ମନ୍ଦିର ଯାଜପୁରର ସ୍ୱର୍ଗତ ଜମିଦାର ଚୌଧୁରୀ ସୁଦର୍ଶନ ମହାପାତ୍ରଙ୍କ ଦ୍ୱାରା ତିଆରି ହୋଇଥିଲା । ବିରଜା ମନ୍ଦିରର ପ୍ରାୟ ୨ କି.ମି ଦୂର କଳଶପୁରଠାରେ ହିଁ ବିରଜାଙ୍କ ଆଦିପୀଠ ରହିଛି । ସେଠାରେ ଏବେ ମଧ ଏହାର ପ୍ରାଚୀନ ପଥର ମନ୍ଦିରର ଧ୍ୱଂସାବଶେଷ ଦେଖିବାକୁ ମିଳିଥାଏ । ଭୌମ ଯୁଗରୁ ରାଜତ୍ୱ ସମୟରେ ବୌଦ୍ଧ ଧର୍ମର ବିସ୍ତାର ଲାଭ କରିଥିବାରୁ ଯାଜପୁରରେ ବହୁ ବୌଦ୍ଧ ମୂର୍ତ୍ତି ଦେଖିବାକୁ ମିଳିଥାଏ । ଏହା ବ୍ୟତୀତ ଯାଜପୁରରେ ତିର୍ଲୋଚନେଶ୍ୱର, ସିଦ୍ଧେଶ୍ୱର ବରାହ ମନ୍ଦିର ଅଛି ।

ଯାଜପୁରରେ ଥିବା ଜଗନ୍ନାଥ ମନ୍ଦିର ଟି ୧୭୦୦ ରୁ ୧୮୦୦ ମଧ୍ୟରେ ନିର୍ମିତ ହୋଇଥିଲା । ସେହିପରି ୧୫୪୦ ରେ ପ୍ରତାପ ରୁଦ୍ର ଦେବଙ୍କ ମୃତ୍ୟୁପରେ ଓଡ଼ିଶା ଯେତେବେଳେ ବିପର୍ଯ୍ୟୟର ଅୟାମରମ୍ଭ ହେଲା । ସେତେବେଳେ ୧୫୬୮ ରେ ଓଡ଼ିଶା ତାର ସ୍ୱାଧୀନତା ହରାଇଲା । ଏହି ସମୟରେ ହିଁ ଯାଜପୁରରେ ସମ୍ରାଟ ଆଓରଙ୍ଗଜେବଙ୍କ ରାଜତ୍ୱ କାଳରେ ଯାଜପୁରରେ ଯୁମାମସଜିଦ୍ ନିର୍ମାଣ କରାଯାଇଥିଲା । ଏହାହିଁ ଥିଲା ମୁସଲମାନମାନଙ୍କ ରାଜତ୍ୱ କାଳରେ ଯାଜପୁର ବାସୀଙ୍କୁ ଦାନ । ଗଙ୍ଗାନଦୀ କୂଳବର୍ତ୍ତୀ ବାରଣାସୀ କୂଳରେ ଦଶ୍ୱାଶମେଧ ଘାଟପରି ଓଡ଼ିଶାର ବୈତରଣୀ ନଦୀକୂଳରେ ଯାଜପୁରଠାରେ ପ୍ରଥମ ଯଯାତି ଦଶ୍ୱାଶମେଧ ଘାଟ ନିର୍ମାଣ କରିଥିଲେ ।

ବିରଜା ମନ୍ଦିର ଆଗରେ ଗରୁଡସ୍ତମ୍ଭ ବା ଶୁଭସ୍ତମ୍ଭଟି ବିଦ୍ୟମାନ ଅଶୋକଙ୍କ ସମୟରୁ ପରାକ୍ରମୀ ରାଜାମାନେ ଦିଗ୍‌ବିଜୟ କରି ବିଭିନ୍ନ ସ୍ଥାନରେ ବିଜୟ ସ୍ତମ୍ଭ ମାନ ନିର୍ମାଣ କରିଥିଲେ । ଏହି ପରମ୍ପରା ଅନୁସରଣ କରି ଯଯାତି ଏହି ଶୁଭସ୍ତମ୍ଭଟି ନିର୍ମାଣ କରିଥିଲେ । କିମ୍ବଦନ୍ତୀ ଅନୁସାରେ କଳାପାହାଡ ଆଦେଶରେ ଲୁହା ଝଞ୍ଜୀର ବନ୍ଧା



Digitized by PPRACHIN, SOA

ହୋଇଥିବା କେତେକ ହାତୀ ସାହାଯ୍ୟରେ ଏ ଗରୁଡ ସ୍ତମ୍ଭକୁ ଭାଙ୍ଗିବାକୁ ଚେଷ୍ଟାକରି ସଫଳ ହୋଇ ପାରିନଥିଲେ । କିନ୍ତୁ ମୁଖ୍ୟ ଗରୁଡ ମୂର୍ତ୍ତିଟି ଭାଙ୍ଗି ଯାଇଥିଲା ।

ବିରଜା କ୍ଷେତ୍ର ତିନିନଦୀ, ତିନିଦେବୀ, ଅଷ୍ଟଚଣ୍ଡୀ, ତ୍ରୟୋଦଶ ରୁଦ୍ର, ଦ୍ୱାଦଶ ମାଧବ, ସପ୍ତରେଖା, ସପ୍ତଧାର ପାଇଁ ପ୍ରତିଷ୍ଠା ଅର୍ଜନ କରିଛି । ମହାଭାରତରେ ବର୍ଣ୍ଣିତ ଅଛି ଯେ, ଏହି କ୍ଷେତ୍ରରେ ଦେହତ୍ୟାଗ କଲେ ମୋକ୍ଷ ପ୍ରାପ୍ତି ହୁଏ । କପିଳ ସଂହିତାରେ ବର୍ଣ୍ଣିତ ହୋଇଛି ଯେ ଏଠାରେ ବିରଜାଙ୍କୁ ଦର୍ଶନ କଲେ ଦଶସହସ୍ର ବର୍ଷ କାଶୀରେ ଶିବପୂଜା କଲେ ଯେଉଁ ପୂର୍ଣ୍ଣଫଳ ମିଳେ ଏଠାରେ ସେହିଫଳ ମିଳିଥାଏ ।

ସ୍ୱାଧୀନତା ସଂଗ୍ରାମରେ ଯାଜପୁର ମଧ ତାର ସ୍ୱତନ୍ତ୍ର ମର୍ଯ୍ୟାଦା ବଜାୟ ରଖିଛି । ୧୯୪୨ ଅଗଷ୍ଟ ବିପ୍ଳବରେ ଯାଜପୁରିଆମାନେ ସଂଗ୍ରାମର ପୁରଭାଗରେ ଥିଲେ । ଅଗଷ୍ଟ ୨୬ ରେ କେତେକ ବିପ୍ଳବୀମାନଙ୍କୁ ପୋଲିସ ଗିରଫ କରିବାରୁ ଲୋକେ ପ୍ରତିରୋଧ କରିବାରୁ ଇଂରେଜ ଫୌଜ ଗୁଳିଚାଳନା କଲେ । ଅଗଷ୍ଟ ୨୭ ରେ ୧୦,୦୦୦ ଲୋକ ଯାଇ ଏସ.ଡି.ଓ ଅଫିସ ଚଢ଼ାଉ କଲେ । ଇଂରେଜମାନେ ଅନ୍ୟ ଉପାୟ ନ ପାଇ ଉଡାଜାହାଜ ଯୋଗେ ଉପରୁ ସତ୍ୟାଗ୍ରହୀମାନଙ୍କ ଉପରକୁ ଡ଼ିନାମାଇଟ ପକାଇଲେ । ଲୋକେ ଛତ୍ରଭଙ୍ଗ ଦେଲେ । ଓଡ଼ିଶାର ସ୍ୱାଧୀନତା ସଂଗ୍ରାମର କୌଣସି ସ୍ଥାନରେ କେବଳ ଯାଜପୁର ବ୍ୟତୀତ ଉଡାଜାହାଜ ଯୋଗେ ଡ଼ିନାମାଇଟ୍ ପକାଇଥିବାର ଦୃଷ୍ଟାନ୍ତ ଦେଖାଯାଇନାହିଁ । ସଂଗ୍ରାମୀ ଗୋପବନ୍ଧୁ ଚୌଧୁରୀଙ୍କ ପରି ଅନେକ ସଂଗ୍ରାମୀଙ୍କ କର୍ମଭୂମି ଥିଲା ଯାଜପୁର ଜିଲ୍ଲାର କୋଣ ଅନୁକୋଣ ।

ଦେବ ଦେବୀ ମଠ ମନ୍ଦିର ଦର୍ଶନୀୟ ସ୍ଥାନ  ପର୍ବ ପର୍ବାଣୀ ଆଦିରେ ଯାଜପୁର ଓଡ଼ିଶରେ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛି । ଯୁଗେ ଯୁଗେ ଯାଜପୁର ତାର ଐତିହ୍ୟ ବଜାୟ ରଖିଛି । ଯାଜପୁରିଆ ବନ୍ଧୁ ମହାନ୍ତିଠାରୁ ଜଗତର ନାଥ ଜଗନ୍ନାଥ ବନ୍ଧୁଭାବ ରଖିବାଠାରୁ ଭାରତ ସ୍ୱାଧୀନତା ପର୍ଯ୍ୟନ୍ତ ସବୁଠି ଯାଜପୁରର ଗୌରବମୟ ଗାଥା ପୌରାଣିକ କିମ୍ୱଦନ୍ତୀ ଇତିହାସର ଛିନ୍ନ ପୃଷ୍ଠାରେ ଏସବୁ ପ୍ରତିପାଦିତ ହେଉଛି । ଯାଜପୁରର ସ୍ୱତନ୍ତ୍ରତା ରହିଛି ଓ ସ୍ୱତନ୍ତ୍ର ଭାବ ରହିଛି, ସ୍ୱତନ୍ତ୍ର ଭାଷା ରହିଛି, ପରମ୍ପରା ରହିଛି ଓ ଐତିହ୍ୟ ରହିଛି । ଏଣୁ ନିଜକୁ ଯାଜପୁରିଆ ଭାବି ଆମେ ଗର୍ବ ଅନୁଭବ କରିବା ନାହିଁ କାହିଁକି ?





ବଟୀଘର
ଚଣ୍ଡୀଖୋଲ



Digitized by PPRACHIN, SOA

# ଯାଜପୁର ଜିଲ୍ଲାର ଭୌଗଳିକ ସ୍ଥିତି

ଯାଜପୁର ଜିଲ୍ଲାର ପୂର୍ବରେ କେନ୍ଦ୍ରାପଡା ଜିଲ୍ଲା, ପଶ୍ଚିମରେ ଢ଼େଙ୍କାନାଳ, ଉତ୍ତରରେ ଭଦ୍ରକ ଓ ଦକ୍ଷିଣରେ କଟକ ଜିଲ୍ଲା ଅବସ୍ଥିତ ।

ତା ୨୦.୪.୯୩ ରିଖରେ ଏହା କଟକ ଜିଲ୍ଲାରୁ ଅଲଗା ହୋଇ ସ୍ୱତନ୍ତ୍ର ଜିଲ୍ଲାର ମାନ୍ୟତା ପାଇଲା । ପ୍ରଥମ ଅବସ୍ଥାରେ ଏହି ଜିଲ୍ଲାର ସଦର ମହକୁମା ପାଣିକୋଇଲିଠାରେ ହେବ ବୋଲି ସରକାରୀ ବିଜ୍ଞପ୍ତି ପ୍ରକାଶ ପାଇଥିଲା ଓ ଏଠାରେ ସଦର ମହକୁମାର ଭିତ୍ତି ପ୍ରସ୍ତର ପଡ଼ିଥିଲା । ପରବର୍ତ୍ତୀ ସରକାର ଏହାର ସଦର ମହକୁମା ଯାଜପୁର ବୋଲି ଘୋଷଣା କଲେ । ଅଧୁନା ଏହି ଜିଲ୍ଲାର ସଦର ମହକୁମା ଯାଜପୁରଠାରେ କାର୍ଯ୍ୟ କରୁଅଛି ଏବଂ ଏହାର ପୋଲିସ ସଦର ଦପ୍ତର ପୂର୍ବପରି ପାଣିକୋଇଲି (ଯଯାତି ନଗର) ଠାରେ ଅବସ୍ଥାପିତ ।

**ସବଡଭିଜନ ଓ ତହସିଲ :**

**ସବଡ଼ିଭିଜନ** : ୧ ଟି - ଯାଜପୁରଠାରେ ଅବସ୍ଥିତ ।

**ତହସିଲ କାର୍ଯ୍ୟାଳୟ** : ୬ ଟି -

ଯାଜପୁର (ଯାଜପୁର), ବିଂଝାରପୁର, (ବିଂଝାରପୁର),
ସୁକିନ୍ଦା (ଯାଜପୁର ରୋଡ଼), ଦର୍ପଣ (ଧାନମଣ୍ଡଳ),
ଧର୍ମଶାଳା (ଜାରକା), ବରୀ ( ବରୀ),

**ବ୍ଲକ କାର୍ଯ୍ୟାଳୟ** : ୧୦ଟି -

ଯାଜପୁର (ଯାଜପୁର), ଦଶରଥପୁର (ଦଶରଥପୁର),
ବିଂଝାରପୁର (ବିଂଝାରପୁର), ବରୀ (ରାମଚନ୍ଦ୍ରପୁର),
ରସୁଲପୁର (କୁଆଖିଆ), କୋରେଇ ( କୋରେଇ),
ଦାନଗଦୀ (ଦାନଗଦୀ), ସୁକିନ୍ଦା (ସୁକିନ୍ଦା),
ଧର୍ମଶାଳା (ଜାରକା), ବଡ଼ଚଣା (ବଡ଼ଚଣା) ।

**ପୌର ପରିଷଦ** : ୨ଟି - ଯାଜପୁର (ଯାଜପୁର)
ଯାଜପୁର ରୋଡ (ବ୍ୟାସନଗର)

**ଥାନା** : ୧୧ଟି - ଯାଜପୁର, ବିଂଝାରପୁର,
କୋରେଇ, ଯାଜପୁରରୋଡ,
ଡୁବୁରୀ, ସୁକିନ୍ଦା,
ଟମକା, ଧର୍ମଶାଳା
ବଡ଼ଚଣା ବାଲିଚନ୍ଦ୍ରପୁର
ମଙ୍ଗଳପୁର



Digitized by PPRACHIN, SOA

ଗ୍ରାମପଞ୍ଚାୟତ ସଂଖ୍ୟା : ୨୪୨

ଗ୍ରାମ ସଂଖ୍ୟା : ୧୫୬୦

ନିବାସଯୋଗ୍ୟ ଗ୍ରାମ୍ୟ ନୁହେଁ : ୨୨୧

ମୁଖ୍ୟ ସହର : ଯାଜପୁର ଯାଜପୁର ରୋଡ ଓ ଚଣ୍ଡୀଖୋଲ

ଜିଲ୍ଲାର ଆୟତନ : ୨୮୮୫ ବର୍ଗ କିଲୋମିଟର ।

ଜନ ସଂଖ୍ୟା : ୧୩,୮୬୦୦,
(୧୯୯୧ ଜନଗଣନା ଅନୁଯାୟୀ)

ପୁରୁଷ : ୭ ଲକ୍ଷ ୧ ହଜାର
ମହିଳା : ୬ ଲକ୍ଷ ୮୦ ହଜାର
ହରିଜନ : ୩ ଲକ୍ଷ ୧୭ ହଜାର
ଆଦିବାସୀ : ୧ ଲକ୍ଷ ୩ ହଜାର
(ଏମାନେ ମୁଖ୍ୟତଃ ସୁକିନ୍ଦା ଅଞ୍ଚଳରେ ବାସକରନ୍ତି)
ହିନ୍ଦୁ : ୧୩ ଲକ୍ଷ ୨୧ ହଜାର ୧୩୪
ମୁସଲମାନ : ୬୨ ହଜାର ୧୫୮
ଖ୍ରୀଷ୍ଟିୟାନ୍ : ୫୪୧
ଶିଖ୍ : ୧୨୯୮
ସହରାଞ୍ଚଳ ଲୋକସଂଖ୍ୟା : ୫୩ ହଜାର
ଗ୍ରାମାଞ୍ଚଳ ଲୋକସଂଖ୍ୟା : ୧୩ ଲକ୍ଷ ୩୩ ହଜାର

ଗମନାଗମନ : ଜାତୀୟ ରାଜପଥ : ୭୪ କିଲୋମିଟର
ଏକ୍ସପ୍ରେସ ରାଜପଥ : ଦୈତାରୀଠାରୁ ଚଣ୍ଡିଖୋଲ ୫୭ କି.ମି.
ଜିଲ୍ଲାରେ ପକ୍କାରାସ୍ତା : ୧୧୬ କିଲୋମିଟର
ଗ୍ରାମ୍ୟ ରାସ୍ତ (ମୋରମ): ୯୦୨ କିଲୋମିଟର ।
ଗ୍ରାମ୍ୟ ପଞ୍ଚାୟତ ରାସ୍ତା : ୨୬୫୬ କିଲୋମିଟର ।
ବନାଞ୍ଚଳ ରାସ୍ତା : ୩୬ କିଲୋମିଟର
ରେଳପଥ : ୧୦୨ କିଲୋମିଟର

ରେଳଷ୍ଟେସନ୍ : ୧୧

୧) ଯାଜପୁର କେନ୍ଦୁଝର ରୋଡ୍ (ମୁଖ୍ୟ ରେଳଷ୍ଟେସନ)
୨) ବୈତରଣୀ ରୋଡ୍    ୬) କୋରେଇ
୩) ଜଖପୁରା    ୭) ଜେନାପୁର
୪) ଗଡ଼ମଧୁପୁର    ୮) ହରିଦାସପୁର
୫) ଧାନମଣ୍ଡଳ    ୯) ବୈରୀ
୧୦) ଦୁଲାଖାପାଟଣା (ପାସେଞ୍ଜର ହଲ୍ଟ)
୧୧) ବରୀ-ଠେଙ୍ଗଡ (ପାସେଞ୍ଜର ହଲ୍ଟ)



Digitized by PPRACHIN, SOA

**ଶିକ୍ଷା ଓ ଶିକ୍ଷାୟତନ : ଶିକ୍ଷା ଜିଲ୍ଲା : ୨ ଟି,**

ଯାଜପୁର ୧ (ଯାଜପୁର)
ଯାଜପୁର ୨ (ଯାଜପୁର ରୋଡ୍, ତୋଲିପୁର)

| | | | |
|---|---|---|---|
| ସ୍କୁଲ ସବଇନ୍ସପେକ୍ଟରଙ୍କ ସଂଖ୍ୟା | : ୩୮ | | |
| ପ୍ରାଥମିକ ସ୍କୁଲ : | ଯାଜପୁର ରେ | = | ୫୫୪, |
| | ଯାଜପୁର ରୋଡ୍ ରେ | = | ୭୩୮ |
| | ମୋଟ | = | ୧୨୯୨ |
| ଉଚ୍ଚ ପ୍ରାଥମିକ ସ୍କୁଲ : | ଯାଜପୁର ରେ | = | ୧୯୭ |
| | ଯାଜପୁର ରୋଡ୍ ରେ | = | ୩୧୦ |
| | ମୋଟ | = | ୫୦୭ |
| ୟୁ.ଜି.ଏମ.ଇ. ସ୍କୁଲ : | ଯାଜପୁର ରେ | = | ୫୩ |
| | ଯାଜପୁର ରୋଡ୍ ରେ | = | ୯୨ |
| | ମୋଟ | = | ୧୪୫ |
| ପୁରୁଣା ସରକାରୀ ମାଇନର ସ୍କୁଲ : | ଯାଜପୁର ରେ | = | ୩ |
| | ଯାଜପୁର ରୋଡ୍ ରେ | = | * |
| | ମୋଟ | = | ୩ |
| ନନ ଫରମାଲ ସେଣ୍ଟର : | ଯାଜପୁର ରେ | = | ୨୦୦ |
| | ଯାଜପୁର ରୋଡ୍ ରେ | = | ୨୮୯ |
| | ମୋଟ | = | ୪୮୯ |

**ଛାତ୍ରଛାତ୍ରୀ ସଂଖ୍ୟା :**

ପ୍ରାଥମିକ : ୨ ଲକ୍ଷ ୩୩ ହଜାର
ମଧ୍ୟ ଇଂରାଜୀ : ୭୧ ହଜାର
ଉଚ୍ଚ ଇଂରାଜୀ : ୬୨ ହଜାର

**ଜିଲ୍ଲାର ଶିକ୍ଷିତ ହାର** : ୫୨.୬୪

**ଜିଲ୍ଲାର ନଦନଦୀ** : ବ୍ରାହ୍ମଣୀ, ବୈତରଣୀ, ଖରସ୍ରୋତା, ବୁଢ଼ା, ପାଟିଆ, କେଲୁଅ, ଗେଙ୍ଗୁଟି ଓ ବିରୂପା ।

**ଜଳସେଚନ ଦ୍ୱାରା** : କେନାଲ ଜଳସେଚନ ଦ୍ୱାରା ଯାଜପୁର, ଦଶରଥପୁର ବିଂଝାରପୁର, ବଡ଼ଚଣା ଓ ଧର୍ମଶାଳାର କିଛି ଜମି । ଜଳସେଚିତ ହୁଏ ।

**ବୃହତ ଓ ମଧ୍ୟମ ଜଳପ୍ରକଳ୍ପ ଦ୍ୱାରା :**

: ଖରିଫ- ୬୨ ହଜାର ହେକ୍ଟର
ରବି - ୩୬ ହଜାର ହେକ୍ଟର ଜଳସେଚିତ



Digitized by PPRACHIN, SOA

| | |
|---|---|
| କ୍ଷୁଦ୍ର ଜଳସେଚନ ଦ୍ୱାରା | : ଖରିଫ ୩୦ ହଜାର ହେକ୍ଟର<br>ରବି ୧୬ ହଜାର ହେକ୍ଟର ଜଳସେଚିତ |
| ଜିଲ୍ଲାର ବୃଷ୍ଟିପାତ ହାର | : ୧୦୧୦.୭ ମିଲିମିଟର |
| ଜଙ୍ଗଲାଞ୍ଚଳ | : ୭୨୫.୨୫ ବର୍ଗ କିଲୋମିଟର |
| ଶିଳ୍ପ | : ଯାଜପୁର ରୋଡ଼ ନିକଟବର୍ତ୍ତୀ ସୁକିନ୍ଦା ଅଞ୍ଚଳରେ (ଦାନଗଦୀ ବ୍ଲକ) - ମେସ୍କୋ କଳିଙ୍ଗ ଓ ନୀଳାଚଳ ଇସ୍ପାତ ନିଗମ ନିର୍ମାଣାଧୀନ । କ୍ରୋମକୁ ନେଇ ଯାଜପୁର ରୋଡ ରେ ଫେରୋକ୍ରମ କାରଖାନା, ଧାନମଣ୍ଡଳଠାରେ କୋଣାର୍କ ଝୋଟକଳ (ଓଡ଼ିଶାର ଏକମାତ୍ର), କ୍ରୋମ ଓର ବେନିଫିକେସନ ପ୍ଲାଣ୍ଟ ୧୯ ଟି । |
| ଜିଲ୍ଲାର ଦର୍ଶନୀୟ ସ୍ଥାନ | : ବିରଜା କ୍ଷେତ୍ର (ଯାଜପୁର), ଗୋକର୍ଣ୍ଣିକା ତୀର୍ଥ (ଦେଉଳିପାଳ, ଜାରକା), ବ୍ୟାସସରୋବର କ୍ଷେତ୍ର (ଯାଜପୁର ରୋଡ଼), ମହାବିନାୟକ କ୍ଷେତ୍ର (ଚଣ୍ଡୀଖୋଲ) ଚଣ୍ଡୀମନ୍ଦିର (ଚଣ୍ଡୀଖୋଲ), ରତ୍ନଗିରି (ବରୀ), ଉଦୟଗିରି (ବଡଚଣା), ଲାଙ୍ଗୁଡ଼ି ବୌଦ୍ଧକୀର୍ତ୍ତି (ଧର୍ମଶାଳା), ରାଧାନଗର ଗଡ଼ (କାଏମା) ଓଳାଶୁଣି ଗୁମ୍ଫା (ପଲେଇ), ଅଶୋକ ଝର (ସୁକିନ୍ଦା), ଛତିଆ, ଅମରାବତୀ । |
| ଖଣି ଖାଦାନ | : ଏସିଆ ମହାଦେଶର ବୃହତ୍ତମ କ୍ରୋମ ସଂପଦ ଅଞ୍ଚଳ ସୁକିନ୍ଦା । ଗଚ୍ଛିତ ପରିମାଣ ସାରାଦେଶର ମୋଟ କ୍ରୋମ ସଂପଦର ୯୫ ଭାଗ । ଏହାଛଡ଼ା ଲୁହାପଥର ନିକେଲ ଓ ମାଙ୍ଗାନିଜ ପ୍ରଭୃତି ଖଣି ଅଛି । ଜିଲ୍ଲାର ଧର୍ମଶାଳା ଓ ସୁକିନ୍ଦା ଅଞ୍ଚଳରେ ବହୁ ଗ୍ରାନାଇଟ ପାହାଡ଼ ଭରି ରହିଛି ଓ ଏହାକୁ ଆଧାର କରି ୧୫୦ ରୁ ଊର୍ଦ୍ଧ୍ୱ କ୍ରସର ୟୁନିଟ ଏଠାରେ କାର୍ଯ୍ୟ କରୁଛି । |





ସୌଜନ୍ୟ
ଶ୍ରୀ ପୂର୍ଣ୍ଣଚନ୍ଦ୍ର ମହାପାତ୍ର
ଜିଲ୍ଲା ପରିସଂଖ୍ୟାନ ଅଧିକାରୀ ଓ
ଶ୍ରୀ ପିତାମ୍ବର ଦାଶ
ସର୍କଲ ଇନ୍ସପେକ୍ଟର ଅଫ ସ୍କୁଲ



Digitized by PPRACHIN, SOA



# ଯାଜପୁର ନ୍ୟାୟପାଳିକା

ଶାସନ ବିଭାଗରୁ ବିଚାର ବିଭାଗ ପୃଥକ୍ ହେବାପରେ ଯାଜପୁରର ପ୍ରଥମ ବିଚାର ବିଭାଗୀୟ ସବ୍‌ଡ଼ିଭିଜନାଲ ମାଜିଷ୍ଟ୍ରେଟ୍ ହୋଇଥିଲେ ନଟବର ନାୟକ । ସେ ସମୟରେ ଯାଜପୁର ଉପଖଣ୍ଡରେ ଜଣେ ସବ୍‌ଡିଭିଜନାଲ ମାଜିଷ୍ଟ୍ରେଟ ଥିଲେ ଓ ଆଉ କେତେଜଣ ଜୁଡିସିଆଲ ମାଜିଷ୍ଟ୍ରେଟ ପ୍ରଥମ ଶ୍ରେଣୀ ଓ ଦ୍ୱିତୀୟ ଶ୍ରେଣୀ ଥିଲେ । ଏବେ ଯାଜପୁରର ସେହି ପଦବୀ, ସବ୍ ଡିଭିଜନାଲ ଜୁଡ଼ିସିଆଲ ମାଜିଷ୍ଟ୍ରେଟ ଭାବେ ପରିଚିତ ଏବଂ ଏସ୍.ଡି.ଏମ୍. ହେଉଛନ୍ତି ମାନସରଂଜନ ତ୍ରିପାଠୀ, ଯାଜପୁର ଜିଲ୍ଲାର ସୁକିନ୍ଦା, ଦାନଗଦି ଓ କୋରାଇ ଥାନାର ଦେଓ୍ୱାନୀ ଓ ଫୌଜଦାରୀ ମୋକଦ୍ଦମାର ବିଚାର କରାଯିବା ପାଇଁ ଯାଜପୁର ରୋଡ଼ଠାରେ ଗୋଟିଏ ମନ୍‌ସିପ୍ ମାଜିଷ୍ଟ୍ରେଟ କୋର୍ଟ ରହିଛି ଏବଂ ଏହି କୋର୍ଟରେ ହାକିମ ଏବେ ଅଛନ୍ତି ଅମୀୟ କୁମାର ସାହୁ । ଯାଜପୁରଠାରେ ଆଉଜଣେ ପ୍ରଥମ ଶ୍ରେଣୀ ବିଚାର ବିଭାଗୀୟ ମାଜିଷ୍ଟ୍ରେଟ ଶ୍ରୀମତୀ ହରିପ୍ରିୟା ଦାଶ ଓ ଆଉଜଣେ ଦ୍ୱିତୀୟ ଶ୍ରେଣୀ ବିଚାର ବିଭାଗୀୟ ମାଜିଷ୍ଟ୍ରେଟ ବିଜୟ କୁମାର ପାତ୍ର ମାମଲା ଗୁଡ଼ିକର ବିଚାର କରୁଛନ୍ତି । ଫୌଜଦାରୀ ମାମଲାର ସୁପରିଚାଳନା ଓ ତଦାରଖ (Supervision & Inspection) ଜିଲ୍ଲା ସ୍ତରୀୟ ମୁଖ୍ୟ ବିଚାର ବିଭାଗୀୟ ମାଜିଷ୍ଟ୍ରେଟ(Chief Judicial Magistrate) କୋର୍ଟ ନୂତନ ଜିଲ୍ଲା ଗଠନରେ ଯାଜପୁରଠାରେ କାର୍ଯ୍ୟ କରୁଛି ଏବଂ ସଂପ୍ରତି ଏହି ପଦବୀରେ ଶରତ ଚନ୍ଦ୍ର ମିଶ୍ର ଅବସ୍ଥାପିତ । ସେ ମଧ୍ୟ ସହକାରୀ ସେସନ୍ସ ଜଜ୍ ଭାବେ ଫୌଜଦାରୀ ମାମଲାର ବିଚାରପତି ଅଟନ୍ତି ।

ଦେଓ୍ୱାନୀ ମୋକଦ୍ଦମା ବିଚାର କ୍ଷେତ୍ରରେ ଯାଜପୁରଠାରେ ଏବେ ଜଣେ ସିଭିଲଜଜ୍ (ଜୁନିଅର ଡିଭିଜନ) ଅଛନ୍ତି । ସେହିପରି କେବଳ ଦେଓ୍ୱାନୀ ମୋକଦ୍ଦମାର ବିଚାର ଓ କେତେକ ଅପିଲ ଶୁଣିବା ପାଇଁ ସିଭିଲ ଜଜ୍ (ସିନିଅର ଡିଭିଜନ) ଅଛନ୍ତି । ଏବଂ ଏବେ ସେହି ପଦବୀରେ କୃଷ୍ଣଚନ୍ଦ୍ର ସ୍ୱାଇଁ କାର୍ଯ୍ୟରତ ।

ସମଗ୍ର ଜିଲ୍ଲାର ଦେଓ୍ୱାନୀ ଓ ଫୌଜଦାରୀ ମାମଲାର ବିଚାରପତି ହେଉଛନ୍ତି ଅତିରକ୍ତି ଜିଲ୍ଲା ଓ ସେସନ୍ସ ଜଜ୍ ନଗେନ୍ଦ୍ର ନାଥ ପ୍ରହରାଜ । ଅବଶ୍ୟ କଟକ ଜିଲ୍ଲାରୁ ସଂପୂର୍ଣ୍ଣ ଭାବେ ମୁକ୍ତି ହୋଇ ନ ଥିବାରୁ କଟକର ଜିଲ୍ଲା ଓ ଦୌରାଜଜ୍ ରାମଚନ୍ଦ୍ର ପଟ୍ଟନାୟକ ମହୋଦୟ ସମଗ୍ର ଅବିଭକ୍ତ କଟକ ଜିଲ୍ଲାର ଜିଲ୍ଲାଜଜ୍ । ଯାଜପୁରର ଅତିରିକ୍ତ ଜିଲ୍ଲାଜଜ୍ କୋର୍ଟରେ ସବୁଶ୍ରେଣୀର ଦେଓ୍ୱାନୀ ଓ ଫୌଜଦାରୀ ସମେତ ସ୍ପେଶାଲ କେସ୍‌ଗୁଡ଼ିକ ଏବେ ବିଚାର ହେଉଛି । ଜିଲ୍ଲାର ଅନ୍ୟ ବ୍ଲକରେ ମୁନସିପ୍ ଅଥବା ମାଜିଷ୍ଟ୍ରେଟ୍ କୋର୍ଟ ଖୋଲିବାର ବ୍ୟବସ୍ଥା ଏବେ ବି ହୋଇନାହିଁ ।



ସୌଜନ୍ୟ :

**ଶ୍ରୀ ଚନ୍ଦ୍ରମଣି ପଣ୍ଡା**
ବରିଷ୍ଠ ଆଇନଜୀବୀ, ଯାଜପୁର



Digitized by PPRACHIN, SOA

# ଯାଜପୁର ଜିଲ୍ଲାର ବ୍ୟବସ୍ଥାପକ ବ୍ୟବସ୍ଥା

**ବିଧାନ ସଭା**

| ନିର୍ବାଚନ ମଣ୍ଡଳୀ | | ବିଧାୟକଙ୍କ ନାମ |
|---|---|---|
| ସୁକିନ୍ଦା | : | ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇ |
| କୋରାଇ | : | ଅଶୋକ ଦାସ |
| ବଡ଼ଚଣା | : | ଅମର ପ୍ରସାଦ ଶତପଥୀ |
| ଧର୍ମଶାଳା | : | କଳ୍ପତରୁ ଦାସ |
| ଯାଜପୁର | : | ସୂର୍ଯ୍ୟମଣି ଜେନା (ସଂରକ୍ଷିତ) |
| ବରୀ-ଡ଼େରାବିଶି | : | ଚିନ୍ମୟ ବେଉରା |
| ବିଂଝାରପୁର | : | ଅର୍ଜୁନ ଚରଣ ଦାସ (ସଂରକ୍ଷିତ) |

**ଲୋକସଭା**

| | | |
|---|---|---|
| ଯାଜପୁର | : | ରାମଚନ୍ଦ୍ର ମଲ୍ଲିକ (ସଂରକ୍ଷିତ ଆସନ) |

| ପଞ୍ଚାୟତ ସମିତି | | ଅଧ୍ୟକ୍ଷ |
|---|---|---|
| କୋରେଇ | : | ଅବଦୁଲ ଓ୍ୱାହିଦ ଖାଁ |
| ଯାଜପୁର | : | ନବକିଶୋର ନାୟକ |
| ବଡ଼ଚଣା | : | ନିରଞ୍ଜନ ସାହୁ |
| ଧର୍ମଶାଳା | : | କିଷାନ ପଣ୍ଡା |
| ରସୁଲପୁର | : | ଶଶୀଭୂଷଣ ସାହୁ |
| ସୁକିନ୍ଦା | : | ସସ୍ମିତା ନାୟକ |
| ଦାନଗଦୀ | : | ସଂଯୁକ୍ତା ରାଉତ |
| ଦଶରଥପୁର | : | ଅମିୟ ମଲ୍ଲିକ |
| ବିଂଝାରପୁର | : | କନକଲତା ମଲ୍ଲିକ |
| ବରୀ | : | ଅଯୋଧ୍ୟା ଜେନା |

**ଜିଲ୍ଲା ପରିଷଦ**

| | | |
|---|---|---|
| ସଭାନେତ୍ରୀ | : | ଶ୍ରୀମତୀ ଅନିଳାବାଳା ଦାସ |
| ଉପସଭାପତି | : | ଦିଗାମ୍ବର କର |

| ପୌରପାଳିକା | ପୌରପାଳ |
|---|---|
| ଯାଜପୁର | ଉତ୍କଳ କେଶରୀ ଦାସ |
| ଯାଜପୁର ରୋଡ | ରସାନନ୍ଦ ମହାନ୍ତି । |







Digitized by PPRACHIN, SOA

# ସ୍ୱାସ୍ଥ୍ୟସେବାରେ ଯାଜପୁର ଜିଲ୍ଲା

**ଜିଲ୍ଲା ମୁଖ୍ୟ ସ୍ୱାସ୍ଥ୍ୟ ଦପ୍ତର** : ଯାଜପୁର

**ଟେଲିଫୋନ ନମ୍ବର** : (୦୬୭୨୮) ୨୦୫୯୭ (ଅଫିସ)
୨୮୬୦ (ଘର)

ଏହି ସଦର ହାସପାତାଳରେ ମେଡ଼ିସ୍‌ନ, ସର୍ଜରୀ, ଶିଶୁରୋଗ ଓ ଚକ୍ଷୁ ଆଦି ବିଭିନ୍ନ ବିଭାଗର ବିଶେଷଜ୍ଞମାନେ ଅଛନ୍ତି ।

ଏଠାରେ ଏକ ବ୍ଲଡ ବ୍ୟାଙ୍କ କାର୍ଯ୍ୟକରୁଅଛି ।

**ସବଡିଭିଜନାଲ ହସପିଟାଲ** : ଯାଜପୁର ରୋଡ଼ (ବ୍ୟାସନଗର) ଏଠାରେ ରୋଗୀମାନଙ୍କ ପାଇଁ ଶଯ୍ୟାର ସୁବିଧା ରହିଛି । ଏହାଛଡା ବିଭିନ୍ନ ବିଭାଗର ଡାକ୍ତର (ବିଶେଷଜ୍ଞ) ଏଠାରେ ଅଛନ୍ତି । ଅନେକଗୁଡିଏ ଘରୋଇ ଚିକିତ୍ସାଳୟ ଏଠାରେ କାର୍ଯ୍ୟ କରୁଛି ।

**କମ୍ୟୁନିଟି ହେଲ୍‌ଥ ସେଣ୍ଟର** : ୪ ଗୋଟି ।

ମାଂଗଳପୁର (ଦଶରଥପୁର ବ୍ଲକ), ବିନ୍‌ଝାରପୁର, ଧର୍ମଶାଳା ଏବଂ ବଡ଼ଚଣା ଏ ସମସ୍ତ ଡାକ୍ତରଖାନାରେ ୬ ଗୋଟି ଶଯ୍ୟାର ବ୍ୟବସ୍ଥା ରହିଛି ।

**ଉନ୍ନିତ ପି.ଏଚ.ସି** - ଦାନଗଦୀ, ଏହା ଏକ ୧୬ ଶଯ୍ୟା ବିଶିଷ୍ଟ ଡାକ୍ତରଖାନା ।

**ପ୍ରାଇମେରୀ ହେଲଥ୍ ସେଣ୍ଟର** - ୬ ଗୋଟି ।

ମାର୍କଣ୍ଡପୁର (ଯାଜପୁର ବ୍ଲକ), ବରୀ, ସୁକିନ୍ଦା, କୋରେଇ, ମଧୁବନ (ରସୁଲପୁର), ଦଶରଥପୁର । ଏ ସମସ୍ତ ଡାକ୍ତରଖାନାରେ ୬ ଗୋଟି ଲେଖା ଶଯ୍ୟାର ବ୍ୟବସ୍ଥା ରହିଛି ।

ଏହାଛଡା ବଡ଼ଚଣା ବ୍ଲକର ଗୋପାଳପୁରରେ ୬ ଜଣ ରୋଗୀଙ୍କ ପାଇଁ ଅସ୍ତ୍ରୋପଚାରର (ସର୍ଜିକାଲ) ସୁବିଧା ରହିଛି ।

**ବ୍ଲକସ୍ତରୀୟ ମେଡିକାଲ ସେଣ୍ଟର :**

**ବିନ୍‌ଝାର ପୁର ବ୍ଲକ** : ପ୍ରିତିପୁର, କଣ୍ଟିପୁର, ବରପଦା, ଉଭଗରା, ରାମଚନ୍ଦ୍ରପୁର, ଜରି ।



Digitized by PPRACHIN, SOA

| | | |
|---|---|---|
| ବରୀ ବ୍ଲକ | : | ବରୀ, ବାଲିଆ, କୃଷ୍ଣନଗର, ରତ୍ନଗିରି, ସହୀଦପୀଠ କାଇପଡା । |
| ବଡଚଣା ବ୍ଲକ | : | ବଡଚଣା, ଛତିଆ, ଉଦୟଗିରି, ବନ୍ତଲା, ବାଉଜଙ୍ଗ, ଦର୍ପଣୀ, କୋଲାସିଂହ, ବିରୂପାଗେଙ୍ଗୁଟି । |
| ଦଶରଥପୁର ବ୍ଲକ | : | ଦଶରଥପୁର, ମଙ୍ଗଳପୁର, ଅହିୟାସ, କଇଁଆଗୋଲା, ରାଧା ଗାଁ, ବଡକୁଆଁଳ । |
| ଦାନଗଦୀ ବ୍ଲକ | : | ଦାନଗଦୀ, ଗୋବର୍ଦ୍ଧନ ପୁର, ଯଖପୁରା, ରାବଣା । |
| ଧର୍ମଶାଳା ବ୍ଲକ | : | ଧର୍ମଶାଳା, କବାଟବନ୍ଧ, ଗଡ଼ମଧୁପୁର, ଜେନାପୁର, ଅରାବନ୍ଦ, କୋତପୁର, ଆରୁହା, ଗଂଗାଧରପୁର, ରାମଚନ୍ଦ୍ରପୁର, ସେବାସମିତି ହରିଦାସପୁର, ବାଲିସାହି । |
| ରସୁଲପୁର ବ୍ଲକ | : | ମଧୁବନ, ହରିପୁର ହାଟ, ବ୍ରହ୍ମବରଦା, ଲକ୍ଷ୍ମୀନଗର, ସିଂହାପୁର, କୁଣ୍ଡପାଟଣା । |
| ଯାଜପୁର ବ୍ଲକ | : | ମାର୍କଣ୍ଡପୁର, ସୁଜନପୁର, ବଗୁଁଆ । |
| ସୁକିନ୍ଦା ବ୍ଲକ | : | ସୁକିନ୍ଦା, ଡୁବୁରୀ, ହାତୀବାରି, ଅତା, କୁନ୍ଦିକା । |
| କୋରେଇ ବ୍ଲକ | : | କୋରେଇ, ପାଣିକୋଇଲି, ବୈତରଣିରୋଡ଼, ମସୁଦ୍‌ପୁର, ଶଙ୍ଖଚିଲା, ପଛିକୋଟା । |
| କୁଷ୍ଠରୋଗ ଇଉନିଟ | : | ୩ ଗୋଟି<br>ଯାଜପୁର, ଯାଜପୁର ରୋଡ଼, ଚଣ୍ଡୀଖୋଲ |
| ଶବ ବ୍ୟବଚ୍ଛେଦ କେନ୍ଦ୍ର | : | ୨ ଗୋଟି<br>ଯାଜପୁର ଏବଂ ଦାନଗଦୀ |

ଚଣ୍ଡୀଖୋଲ ଘରୋଇ ବସ୍ ମାଲିକ ସଂଘ
ସହାୟତାରେ ଦୁର୍ଘଟଣା ଚିକିତ୍ସା କେନ୍ଦ୍ର : ଚଣ୍ଡୀଖୋଲ



ସୌଜନ୍ୟ :
ଜିଲ୍ଲା ମୁଖ୍ୟ ଚିକିତ୍ସା ଅଧିକାରୀ,
ଯାଜପୁର ।



Digitized by PPRACHIN, SOA

# ଯାଜପୁର ଜିଲ୍ଲାରେ ପଶୁସଂପଦ

୧୯୯୫ ମସିହାରେ ପଶୁଧନ ଗଣନା ଅନୁଯାୟୀ ଜିଲ୍ଲାରେ ମୋଟ ୬ ଲକ୍ଷ ୨୩ ହଜାର ୧୪୯ ଟି ଗୋରୁଗାଈଥିଲେ । ସେଥିମଧରୁ ୨ ଲକ୍ଷ ୯୫ ହଜାର ୧୦୩ ପୁରୁଷ ଗୋରୁ ଓ ୩ ଲକ୍ଷ ୨୮ ହଜାର ୯୧ଟି ମାଈଗୋରୁ ଥିଲେ । ସେହିଭଳି ମୋଟ ୧୧ ହଜାର ୯୩୨ଟି ମଇଁଷି ମଧରୁ ୭୭୦୮ ଟି ମାଈ ଓ ୪୨୨୪ ଟି ପୁରୁଷ ମଇଁଷି ଓ ୨ ଲକ୍ଷ ୧୦ ହଜାର ୪୭ଟି ମେଣ୍ଢା, ୬୨୭୫ ଟି ଘୁଷୁରୀ ଓ ୩ ଲକ୍ଷ ୮୨ ହଜାର ୫୪୪ଟି କୁକୁଡା ଥିଲେ । ସେହିଭଳି ୨୫୮୬ ଟି ପୁରୁଷ ଓ ୮୨୪୨ ଟି ମାଈ C.B. Animal ଥିଲେ

**ଯାଜପୁର ଜିଲ୍ଲାରେଥିବା ପଶୁ ଚିକିତ୍ସାଳୟ ଓ ପଶୁସହାୟକ କେନ୍ଦ୍ରର ତାଲିକା :**

| | | |
|---|---|---|
| ମୋଟ ହସପିଟାଲ ଓ ଡିସପେନସାରୀ ସଂଖ୍ୟା | : | ୧୮ |
| ମୋଟ ପଶୁଧନ ସହାୟକ କେନ୍ଦ୍ର | : | ୮୪ |
| ମୋଟ କୃତ୍ରିମ ଗୋ ପ୍ରଜନନ କେନ୍ଦ୍ର | : | ୪୪ |

**ଯାଜପୁର ବ୍ଲକ :**

ଭି.ଏଚ-ଯାଜପୁର (ଏ.ଆଇ),

(କ) ଏଲ.ଏ.ସି-କପାସି (ଏ.ଆଇ), (ଖ) ଏଲ.ଏ.ସି - ଯାଜପୁର,

(ଗ) ଏଲ.ଏ.ସି - ମାଲପଡ଼ା, (ଘ)ଏଲ.ଏ.ସି-ସିମୁଳିଆ (ଏ.ଆଇ),

(ଙ) କେ.ଭି.ୟୁନିଟ୍-ରୁଢ଼ିଆ, (ଚ) କେ.ଭି ୟୁନିଟ୍-କମାଗଡ,

(ଛ) କେ.ଭି.ୟୁନିଟ୍-ନାଥସାହି ।

ଭି.ଡି. ସୁଜନପୁର (ଏ.ଆଇ.),

(କ) ଏଲ.ଏ.ସି.-କବିରପୁର, (ଖ) ଏଲ.ଏ.ସି.-ଦେବିଲ୍ ।

**ବିଂଝାରପୁର ବ୍ଲକ :**

ଭି.ଡି.ବିଂଝାରପୁର (ଏ.ଆଇ.),

(କ) ଏଲ.ଏ.ସି.-ସିଂହପୁର (ଏ.ଆଇ.), (ଖ)ଏଲ.ଏ.ସି.-ପ୍ରାତିପୁର (ଏ.ଆଇ.),

(ଗ) ଏଲ.ଏ.ସି.-ମଇଁଦା(ଏ.ଆଇ.), (ଘ)ଏଲ.ଏ.ସି.-ବାଳମୁକୁଳି (ଏ.ଆଇ.),

(ଙ) ଏଲ.ଏ.ସି.- ଚିକଣା, (ଚ) ଏଲ.ଏ.ସି.- ଜରି,

(ଛ) ଏଲ.ଏ.ସି.- ଉଦ୍ରଙ୍ଗ, (ଜ)ଏଲ.ଏ.ସି.-ବରପଦା(ଏ.ଆଇ.) ।



Digitized by PPRACHIN, SOA

**ଦଶରଥପୁର ବ୍ଲକ :**

ଭି.ଡି.-ଦଶରଥପୁର (ଏ.ଆଇ.),

(କ) ଏଲ.ଏ.ସି.- ରାମବାଗ (ଏ.ଆଇ),(ଖ) ଏଲ.ଏ.ସି.- ପଳଦା (ଏ.ଆଇ.),

(ଗ) ଏଲ.ଏ.ସି.- ଚିଡ଼ଳ (ଏ.ଆଇ.),(ଘ) ଏଲ.ଏ.ସି.- ଭେଲଙ୍ଗ (ଏ.ଆଇ.),

(ଙ) ଏଲ.ଏ.ସି.-ଅହିୟାସ(ଏ.ଆଇ.),(ଚ) ଏଲ.ଏ.ସି.-ନନ୍ଦିପୁର (ଏ.ଆଇ.) ।

ଭି.ଡି.ମଙ୍ଗଳପୁର (ଏ.ଆଇ),

(କ) ଏଲ.ଏ.ସି.- କୟାଁଗୋଲା, (ଖ) ଏଲ.ଏ.ସି.- ପାରିପଦା,

(ଗ) ଏଲ.ଏ.ସି.- ଚଷାଖଣ୍ଡ ।

**କୋରେଇ ବ୍ଲକ :**

ଭି.ଡି.କୋରେଇ (ଏ.ଆଇ),

(କ) ଏଲ.ଏ.ସି.-ପୂର୍ବକୋଟ(ଏ.ଆଇ.),(ଖ) ଏଲ.ଏ.ସି.- ଗୌରପୁର,

(ଗ) ଏଲ.ଏ.ସି.- ମକୁନ୍ଦପୁର, (ଘ) ଏଲ.ଏ.ସି.- ଡଳଗଡ଼,

(ଙ) ଏଲ.ଏ.ସି.- ଦୁଲାଖାପାଟଣା, (ଚ) କେ.ଭି.ୟୁନିଟ-ପାଣିକୋଇଲି,

(ଛ) କେ.ଭି.ୟୁନିଟ-ବଡ଼ବିରୁଁଆ, (ଜ) କେ.ଭି.ୟୁନିଟ-ଶିଙ୍ଗଚିଲା,

(ଝ) କେ.ଭି.ୟୁନିଟ ବରୁଣ୍ଡେଇ ।

**ଦାନଗଦି ବ୍ଲକ :**

ଭି.ଡି.ଦାନଗଦି (ଏ.ଆଇ.),

(କ) ଏଲ.ଏ.ସି.- ମାନ୍ତିରା, (ଖ)ଏଲ.ଏ.ସି.-ଜଖପୁରା (କେ.ଭି.ୟୁନିଟ) ।

ଭି.ଡି.ଗୋବର୍ଦ୍ଧନପୁର (ଏ.ଆଇ.),

(କ) ଏଲ.ଏ.ସି. - ନଛିପୁରା, (ଖ) ଏଲ.ଏ.ସି.- ଟମକା,

(ଗ) ଏଲ.ଏ.ସି.- ଓସ୍ତପାଳ ।

**ସୁକିନ୍ଦା ବ୍ଲକ :**

ଭି.ଡି.ସୁକିନ୍ଦା (ଏ.ଆଇ),

(କ) ଏଲ.ଏ.ସି.- ଅଠା, (ଖ) ଏଲ.ଏ.ସି.- ହାତୀବାରି,

(ଗ) ଏଲ.ଏ.ସି.- ଡୁବୁରି, (ଘ) ଏଲ.ଏ.ସି.- ଦୁଧୁଝରି,

(ଙ) ଏଲ.ଏ.ସି.- କଙ୍କଡାପାଳ, (ଚ) ଏଲ.ଏ.ସି.- କାଳିଆପାଣି,

(ଛ) ଏଲ.ଏ.ସି.- ଢ଼ୋଲପଥର, (ଜ) ଏଲ.ଏ.ସି.- ହରିପୁର ।



Digitized by PPRACHIN, SOA

**ବରୀବ୍ଲକ :**

ଭି.ଡି.ରମ୍ଭା (ଏ.ଆଇ.),

(କ) ଏଲ.ଏ.ସି.- ରାମଚନ୍ଦ୍ରପୁର, (ଖ) ଏଲ.ଏ.ସି.- ବାଇଁଶିରିଆ,
(ଗ) ଏଲ.ଏ.ସି.- ଅନ୍ୟାସପୁର, (ଘ) ଏଲ.ଏ.ସି.- ବୋଦୁଅ,
(ଙ) ଏଲ.ଏ.ସି.- ଗୋଳକୁଣ୍ଡ, (ଚ) ଏଲ.ଏ.ସି.- ରତଳାଙ୍ଗ ।

ଭି.ଡି.ଅଙ୍ଗାଳ (କ)

(କ) ଏଲ.ଏ.ସି.- ଜଗନ୍ନାଥପୁର

ଭି.ଡି.ରତ୍ନଗିରି (ଏ.ଆଇ.),

(କ) ଏଲ.ଏ.ସି.- ଅମଠପୁର, (ଖ) ଏଲ.ଏ.ସି.- ଧାରପୁର,
(ଗ) ଏଲ.ଏ.ସି.- ଗମ୍ଭ, (ଘ) ଏଲ.ଏ.ସି.- ହାଟସାହି,
(ଙ) ଏଲ.ଏ.ସି.- ପରମାନନ୍ଦପୁର ।

**ବଡ଼ଚଣା ବ୍ଲକ :**

ଭି.ଡି.ବଡଚଣା (ଏ.ଆଇ.),

(କ) ଏଲ.ଏ.ସି.-ଗରଗାଲି(ଏ.ଆଇ.), (ଖ)ଏଲ.ଏ.ସି.-ଚଣ୍ଡୀଖୋଲ (ଏ.ଆଇ.),
(ଗ) ଏଲ.ଏ.ସି.-ବିଦ୍ୟାଧରପୁର (ଏ.ଆଇ.), (ଘ) ଏଲ.ଏ.ସି.- ସିହା,
(ଙ) ଏଲ.ଏ.ସି.- କାଇମାଟିଆ, (ଚ) ଏଲ.ଏ.ସି.- ଖଡ଼ିଅଙ୍ଗ ।

ଭି.ଡି.ଗୋପାଳପୁର (ଏ.ଆଇ.),

(କ) ଏଲ.ଏ.ସି.-ବଦ୍ଧରେଶ୍ୱର(ଏ.ଆଇ.), (ଖ) ଏଲ.ଏ.ସି.-ଭାକୁତ (ଏ.ଆଇ.),
(ଗ) ଏଲ.ଏ.ସି. - ବନମାଳିପୁର, (ଘ) ଏଲ.ଏ.ସି. - ବାଲିକୁଦା,
(ଙ) ଏଲ.ଏ.ସି. - ଭରତପୁର, (ଚ) ଏଲ.ଏ.ସି.-ଚାରିନଙ୍ଗଳ ।

ଭି.ଡି.ଛଟିଆ (ଏ.ଆଇ.),

(କ) ଏଲ.ଏ.ସି.- କଇଥା (ଏ.ଆଇ.), (ଖ) ଏଲ.ଏ.ସି.- ଶାଳପଡ଼ା,
(ଗ) ଏଲ.ଏ.ସି.- ବନ୍ତଳା, (ଘ) ଏଲ.ଏ.ସି.- ବରିଠେଙ୍ଗଡ଼,
(ଙ) ଏଲ.ଏ.ସି.- ବରୁଣିଆ ।

**ରସୁଲପୁର ବ୍ଲକ :**

ଭି.ଡି.ରସୁଲପୁର (ଏ.ଆଇ.),

(କ) ଏଲ.ଏ.ସି.- ହରିପୁରହାଟ, (ଖ) ଏଲ.ଏ.ସି.- ବ୍ରହ୍ମବରଦା,
(ଗ) ଏଲ.ଏ.ସି.- କୃଷ୍ଣପଡ଼ା, (ଘ) ଏଲ.ଏ.ସି.- ତୁଳସୀପୁର,
(ଙ) କେ.ଭି.- କଲଣ, (ଚ) କେ.ଭି.- କୁଆଖିଆ,
(ଛ) କେ.ଭି.- ବାରବାଟୀ, (ଜ) କେ.ଭି.- ଗୋପିନାଥପୁର ।



Digitized by PPRACHIN, SOA

**ଧର୍ମଶାଳା ବ୍ଲକ :**

ଭି.ଡି.ଧର୍ମଶାଳା (ଏ.ଆଇ.),

(କ) ଏଲ.ଏ.ସି.-କୋଟପୁର(ଏ.ଆଇ.),(ଖ) ଏଲ.ଏ.ସି.- ନେଉଳପୁର,

(ଗ) ଏଲ.ଏ.ସି.- ମିର୍ଜାପୁର, (ଘ) ଏଲ.ଏ.ସି.- ରାଇପଡ଼ା,

(ଙ) ଏଲ.ଏ.ସି.- ନୀଳକଣ୍ଠପୁର, (ଚ) ଏଲ.ଏ.ସି.- ଅରେଇକଣା,

(ଛ) ଏଲ.ଏ.ସି.- କଣ୍ଡିଗଡିଆ ।

ଭି.ଡି.ଗଡମଧୁପୁର,

(କ) ଏଲ.ଏ.ସି.- ଜେନାପୁର, (ଖ) ଏଲ.ଏ.ସି.- ବାଲିସାହି,

(ଗ) ଏଲ.ଏ.ସି.- ମାଳହାଟ, (ଘ) ଏଲ.ଏ.ସି.- ଡଳଗଡ଼ ।

**ଯାଜପୁର ରୋଡ୍ (ଏନ.ଏ.ସି) :**

ଭି.ଡି.-ଯାଜପୁର ରୋଡ୍,

(କ) କେ.ଭି.ବ୍ଲକ-ଯାଜପୁର ରୋଡ୍ ।

**ସୂଚନା :**

ଏଲ.ଏ.ସି.- Live Stock Aid Centre (ପଶୁଧନ ସହାୟକ କେନ୍ଦ୍ର)

ଭି.ଡି - Veterinary Dispensarry (ପଶୁ ଚିକିତ୍ସା କେନ୍ଦ୍ର)

ଏ.ଆଇ.- Artificial Inservination (କୃତ୍ରିମ ଗୋ-ପ୍ରଜନନ କେନ୍ଦ୍ର)

❒ ❒ ❒

ସୌଜନ୍ୟ

ମୁଖ୍ୟ ଜିଲ୍ଲା ପଶୁ ଚିକିତ୍ସା ଅଧିକାରୀ
ଯାଜପୁର



# ଉଚ୍ଚଶିକ୍ଷାରେ ଯାଜପୁର

ମାନବ ଜାତିର ସର୍ବଶ୍ରେଷ୍ଠ ଉଦ୍ଭାବନ ହେଉଛି ଶିକ୍ଷା । ଶିକ୍ଷା ମଣିଷର ଜନ୍ମଠାରୁ ଆରମ୍ଭ ହୁଏ ଓ ମୃତ୍ୟୁରେ ଶେଷ ହୁଏ । ଏଣୁ ଶିକ୍ଷା ଏକ ଜୀବନ ବ୍ୟାପି ଧାରା । ମଣିଷ ବିଦ୍ୟାଳୟରେ ଯେଉଁ ସବୁ ଅଭିଜ୍ଞତା ହାସଲ କରିଥାଏ, ତାହାହିଁ ତାର ପ୍ରକୃତ ଶିକ୍ଷା । 'ଶିକ୍ଷା'ର ଅର୍ଥ ଏକ ନିର୍ଦ୍ଦିଷ୍ଟ ଶବ୍ଦ ମଧ୍ୟରେ ସୀମାବଦ୍ଧ ନୁହେଁ । ଶିକ୍ଷାର ସଂଜ୍ଞା ଗତିଶୀଳ ଓ ବ୍ୟାପକ ।

ଜଣେ ପ୍ରାଣୀ ବିଜ୍ଞାନୀ, ଜଣେ ବ୍ୟବସାୟୀ ବା ଜଣେ ଦୋକାନୀ ସେମାନଙ୍କର ନିଜ ନିଜର ଦୃଷ୍ଟିଭଙ୍ଗୀ ଦ୍ୱାରା ଶିକ୍ଷାର ଭିନ୍ନ ଭିନ୍ନ ସଂଜ୍ଞା ନିରୂପଣ କରିପାରନ୍ତି ।

ଶିକ୍ଷା ଦ୍ୱାରା ମାନବର ସର୍ବାଙ୍ଗୀନ ଉନ୍ନତି ସାଧନ ହୋଇଥାଏ । ସମାଜର ଅଗ୍ରଗତି ଓ ଉନ୍ନତି ବିଧାନ ନିମନ୍ତେ ଶିକ୍ଷାର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

ଓଡ଼ିଶାରେ ଉଚ୍ଚଶିକ୍ଷାର ସର୍ବାଙ୍ଗୀନ ଉନ୍ନତି ପାଇଁ ବିଶ୍ୱବିଦ୍ୟାଳୟ, ମହାବିଦ୍ୟାଳୟ, ଉଚ୍ଚମାଧ୍ୟମିକ ଶିକ୍ଷାପରିଷଦ ପ୍ରଭୃତି ଗଠନ କରାଯାଇଛି । ବର୍ତ୍ତମାନ ଓଡ଼ିଶାର ଯାଜପୁର ଜିଲ୍ଲାରେ ଅବସ୍ଥିତ ସମଗ୍ର +୨ ଓ +୩ ମହାବିଦ୍ୟାଳୟମାନଙ୍କୁ ଆଲୋଚନାର ପରିସରକୁ ଅଣାଯାଉ । ଯାଜପୁର ଜିଲ୍ଲାର ୪୧ଟି +୨ ମହାବିଦ୍ୟାଳୟ ଉଚ୍ଚମାଧମିକ ପରିଷଦ, ଓଡ଼ିଶା ଦ୍ୱାରା ସ୍ୱୀକୃତି ଲାଭ କରିଛି । ଏଥି ମଧ୍ୟରେ ୨୨ ଟି ବହୁ ପୁରାତନ, ଏବଂ ପୁରାତନ ମହାବିଦ୍ୟାଳୟରେ +୩ କଳା/ବିଜ୍ଞାନ/ବାଣିଜ୍ୟ ଶ୍ରେଣୀ ପ୍ରଭୃତି ରହିଛି । ଏହି ୨୨ଟି +୩ (ଡ଼ିଗ୍ରୀ କଲେଜ) କଲେଜ ଉତ୍କଳ ବିଶ୍ୱବିଦ୍ୟାଳୟ ଅଧିନରେ ସହବନ୍ଧନ ବା ସ୍ୱୀକୃତି ଲାଭ କରିଛି । ଯାଜପୁର ଜିଲ୍ଲାର ମହାବିଦ୍ୟାଳୟମାନଙ୍କ ବିଷୟରେ ସଂକ୍ଷିପ୍ତ ଆଲୋଚନା ।

**ବୈଷୟିକ ଅନୁଷ୍ଠାନ** : ନାହିଁ,

**ଉପାଧ୍ୟୁଉର ଶ୍ରେଣୀ** : ଏନ୍. ସି କଲେଜ ଯାଜପୁର ଓ ବ୍ୟାସନଗର କଲେଜ, ଯାଜପୁର ରୋଡ଼ ।

**ଏନ.ସି. କଲେଜ** : ସା./ପୋ.-ଯାଜପୁର, ପିନ୍ ୭୫୫ ୦୦୧, ପ୍ରତିଷ୍ଠା : ୧୯୪୬ ଫୋନ : ୦୬୭୨୮-୨୦୦୩୨ ।

**ବ୍ୟାସନଗର କଲେଜ** : ସା./ପୋ- ଯାଜପୁର ରୋଡ଼, ପିନ୍-୭୫୫ ୦୧୯, ପ୍ରତିଷ୍ଠା : ୧୯୬୬, ଫୋନ. ୦୬୭୨୬-୨୦୨୯୬ ।

**ସାଧୁ ଗୌଡେଶ୍ୱର କଲେଜ** : ସା./ପୋ.-କନିକାପଡ଼ା, ପିନ - ୭୫୫ ୦୩୭, ପ୍ରତିଷ୍ଠା : ୧୯୭୫ ମସିହା ।



Digitized by PPRACHIN, SOA

ବାବା ଭୈରବାନନ୍ଦ ମହାବିଦ୍ୟାଳୟ : ସା./ପୋ.-ଚଣ୍ଡିଖୋଲ, ପିନ୍-୭୫୫ ୦୧୬,
ପ୍ରତିଷ୍ଠା -୧୯୭୬ ମସିହା ଫୋନ : ୦୬୭୨୫-୨୨୮୮

ମା ତାରିଣୀ ମହାବିଦ୍ୟାଳୟ : ସା./ପୋ. ପାଣିକୋଇଲି,ପିନ.- ୭୫୫ ୦୪୩,
ପ୍ରତିଷ୍ଠା : ୧୯୯୦, ଫୋନ. ୦୬୭୨୬-୪୦୧୨୪ ।

ଜେନାପୁର କଲେଜ : ସା./ପୋ. ଜେନାପୁର, ପିନ୍.-୭୫୫ ୦୨୩,
ପ୍ରତିଷ୍ଠା : ୧୯୯୨, ଫୋନ୍. ୦୬୭୨୫-୮୯୪୩ ।

ବି.ଏସ. କଲେଜ : ସା./ପୋ. ଅରଖପୁର, ପିନ୍. ୭୫୪ ୦୨୪,
ପ୍ରତିଷ୍ଠା : ୧୯୮୦ ।

ଧର୍ମଶାଳା ମହାବିଦ୍ୟାଳୟ: ସା./ପୋ. ଧର୍ମଶାଳା, ପିନ. ୭୫୫ ୦୦୮,
ପ୍ରତିଷ୍ଠା : ୧୯୭୮, ଫୋନ. ୦୬୭୨୫-୭୮୪୨୮ ।

ସୁକିନ୍ଦା କଲେଜ : ସା./ପୋ. ସୁକିନ୍ଦା, ପିନ୍. ୭୫୫ ୦୧୮,
ପ୍ରତିଷ୍ଠା : ୧୯୭୯ ।

ସାହସପୁର କଲେଜ : ସା./ପୋ. ବାଲିଚନ୍ଦ୍ରପୁର, ପିନ୍. ୭୫୪ ୨୦୫,
ପ୍ରତିଷ୍ଠା : ୧୯୭୮ ।

ଉପେନ୍ଦ୍ରନାଥ ସାରଦା ମହାବିଦ୍ୟାଳୟ : ସା. ଖଇରାବାଦ, ପୋ. ମୁଗୁପାଳ,
ପିନ. ୭୫୫୦୦୯, ପ୍ରତିଷ୍ଠା : ୧୯୭୫ ।

ପି.କେ ମହାବିଦ୍ୟାଳୟ : ସା./ପୋ. ବୈତରିଣୀ ରୋଡ, ପିନ୍. ୭୫୫ ୦୨୫,
ପ୍ରତିଷ୍ଠା : ୧୯୮୯ ।

ମଧୁପୁର କଲେଜ : ସା./ପୋ. କଲ୍ୟାଣ, ପିନ. ୭୫୫ ୦୦୮,
ପ୍ରତିଷ୍ଠା : ୧୯୮୨ ।

କାଦମ୍ବିନୀପାଳ ମହିଳା କଲେଜ : ସା. ରାଜାତୋଟା, ପୋ. ବାଲିବିଲି,
ପିନ୍.୭୫୫ ୦୦୩, ପ୍ରତିଷ୍ଠା : ୧୯୮୮ ।

ବିରଜା ମହିଳା ମହାବିଦ୍ୟାଳୟ : ସା./ପୋ. ଯାଜପୁର ଟାଉନ୍, ପ୍ରତିଷ୍ଠା:୧୯୮୦ ।

ଆଞ୍ଚଳିକ ପଞ୍ଚାୟତ କଲେଜ : ସା./ପୋ. ସୁଜନପୁର, ପିନ୍. ୭୫୫ ୦୧୬,
ପ୍ରତିଷ୍ଠା : ୧୯୭୯ ।

ଅଳକୁଣ୍ଡ ମହିଳା ମହାବିଦ୍ୟଳୟ : ସା. ନୂଆଗାଁ, ପୋ. ଅଳକୁଣ୍ଡ,
ପିନ. ୭୫୫ ୦୧୩, ପ୍ରତିଷ୍ଠା ୧୯୮୮ ।

ଭାରତୀ ବିହାର ମହାବିଦ୍ୟାଳୟ : ସା./ପୋ. ହରିପୁର, ଭାୟା. ସୁକିନ୍ଦା,
ପିନ. ୭୫୫ ୦୧୮, ପ୍ରତିଷ୍ଠା : ୧୯୯୨ ।

ରିଙ୍ଗୋନାଲ କଲେଜ : ସା./ପୋ. ରାମବାଗ, ପିନ୍. ୭୫୫ ୦୧୪,
ପ୍ରତିଷ୍ଠା : ୧୯୮୩ ।



Digitized by PPRACHIN, SOA

ଏହି ସବୁ +୩ ମହାବିଦ୍ୟାଳୟ ବ୍ୟତୀତ +୨ କଲେଜଗୁଡ଼ିକ ହେଉଛି :- ବ୍ରହ୍ମବରଦା କଲେଜ ବ୍ରହ୍ମବରଦା, ବଜ୍ରଗିରି ମହାବିଦ୍ୟାଳୟ କୋଟପୁର, ଧର୍ମଶାଳା ମହିଳା ମହାବିଦ୍ୟାଳୟ, ବଡ଼ଚଣା ମହିଳା ମହାବିଦ୍ୟାଳୟ, ବାବା ହରେକୃଷ୍ଣଦାସ ମହାବିଦ୍ୟାଳୟ, ବରୁଣେଶ୍ୱର ମହାବିଦ୍ୟାଳୟ (+୩ କଲେଜ), ଚିଲାଳ କଲେଜ, ଦଶରଥପୁର ଏଚ.ଏସ୍.ସ୍କୁଲ, ଝାଡେଶ୍ୱର ମହାବିଦ୍ୟାଳୟ ଚୋଲ୍‌କାନି, ସୁଣଭଦ୍ରା କଲେଜ (+୩ କଲେଜ), ଖରସ୍ରୋତା ମହାବିଦ୍ୟାଳୟ (+୩ କଲେଜ), କାହ୍ନୁଚରଣ ମହାବିଦ୍ୟାଳୟ କୋରେଇ, କାଶୀନାଥ ମହାବିଦ୍ୟାଳୟ କାଇପଡ଼ା, ଏଲ.ବି. କଲେଜ ଅଙ୍ଗାଳ, ମଧୁବନ କଲେଜ ମଧୁବନ ହାଟ, ମଙ୍ଗଳପୁର ମହିଳା କଲେଜ, ଏବଂ ସନ୍ଥ ମହାବିଦ୍ୟାଳୟ ।

❑ ❑ ❑

*ସୌଜନ୍ୟ:*
**ଡକ୍ଟର ଚନ୍ଦ୍ରକାନ୍ତ ମହାନ୍ତି**
*ଅଧ୍ୟକ୍ଷ*
ମା'ତାରିଣୀ ମହାବିଦ୍ୟାଳୟ
ପାଣିକୋଇଲି, ଯାଜପୁର ।



# ସର୍ବଧର୍ମ ମହାଯଜ୍ଞ

ଗତ ଡିସେମ୍ବର ମାସରେ କୁଆଖିଆ ନିକଟସ୍ଥ ରସୁଲପୁର ବ୍ଲକ ମେଲଣ ପଡ଼ିଆଠାରେ ବିଶ୍ୱମାନବ ଧର୍ମ ପ୍ରଚାର ସମିତି ଓ ଏହାର ପ୍ରତିଷ୍ଠାତା ସଂଗଠନ ରାଷ୍ଟ୍ରୀୟ ସେବକ ମଞ୍ଚ ତରଫରୁ ସତ୍ୟର ପ୍ରକାଶ ଓ ବିଶ୍ୱ ଭାତୃତ୍ୱ ସୃଷ୍ଟି ଉଦ୍ଦେଶ୍ୟରେ ''ମାନବ ଧର୍ମ'' ସଂସ୍ଥାପନା ନିମିତ୍ତ ଏକ ସର୍ବଧର୍ମ ମହାଯଜ୍ଞ ଅନୁଷ୍ଠିତ ହୋଇଥିଲା । ଏହା ବିଶ୍ୱର ପ୍ରଥମ ସର୍ବଧର୍ମ ମହାଯଜ୍ଞ ବୋଲି କୁହାଯାଉଛି । ଏଠାରେ ବିଶ୍ୱର ପ୍ରଥମ ମାନବଧର୍ମ ଆନୁଷ୍ଠାନିକ ଭାବେ ସଂସ୍ଥାପନା କରାଯାଇଥିଲା ।





Digitized by PPRACHIN, SOA

# ଆଦର୍ଶ ଶିକ୍ଷାକେନ୍ଦ୍ର
# ଯୁଗସ୍ରଷ୍ଟା ଶୋଭନୀୟ ଶିକ୍ଷାଶ୍ରମ, ଉଦୟଗିରି

ବିଶ୍ୱଦରବାରରେ ଓଡ଼ିଶାକୁ ଓ ଭାରତକୁ ଗୌରବାନ୍ୱିତ କରିବାପାଇଁ ଓଡ଼ିଶାର ଯାଜପୁର ଜିଲ୍ଲାର ବଡ଼ଚଣା ବ୍ଲକ ଅନ୍ତର୍ଗତ ଐତିହାସିକ ମନୋରମ ବୌଦ୍ଧପୀଠ ଉଦୟଗିରିଠାରେ ଆନ୍ତର୍ଜାତିକ ଅଶୋଭନୀୟତା ନିରୋଧ ଆନ୍ଦୋଳନର ପ୍ରବର୍ତ୍ତକ ପୂଜ୍ୟ ଶ୍ରୀ କୁମାର ଭାଇଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇ, ଗଢ଼ି ଉଠୁଛି ଅତୀତର ଗୁରୁକୁଳ ଆଶ୍ରମ । ଶିକ୍ଷାପଦ୍ଧତି, ସତ୍ୟବାଦୀ, ଶାନ୍ତିନିକେତନ ମୌଳିକ ଓ ଆଧୁନିକ ଶିକ୍ଷାପଦ୍ଧତିର ଶ୍ରେଷ୍ଠ ବିଭବର ସମନ୍ୱୟରେ ଆଦର୍ଶ ଆବାସିକ ବିଦ୍ୟାଳୟ-ଯୁଗସ୍ରଷ୍ଟା ଶୋଭନୀୟ ଶିକ୍ଷାଶ୍ରମ । ସ୍ଥାୟୀ ଚାକିରୀଛାଡ଼ି କେତେକ ଉତ୍ସର୍ଗିକୃତ ଆଦର୍ଶ ଗୁରୁମା ପିଲାଙ୍କୁ ସବୁଦିଗରୁ ଗଢ଼ି ତୋଳିବା ପାଇଁ ଅକ୍ଳାନ୍ତ ପରିଶ୍ରମ କରି ଚାଲିଛନ୍ତି ।

ସମାଜକୁ କୁଳାଳସା, ଦୁର୍ନୀତି, ସୁବିଧାବାଦିତା, ସଂଯମ ହୀନତା, ଭ୍ରାନ୍ତି, ଅଶାନ୍ତି, ଈର୍ଷା, ହିଂସା, ପ୍ରତିହିଂସା ଓ ଧ୍ୱଂସ ନିଆଁରୁ ରକ୍ଷା କରି ବାସ୍ତବ ଶାନ୍ତି, ଶୃଙ୍ଖଳା, ସୁବିଚାର, ସୁବ୍ୟବହାର, ସାଧୁତା, କର୍ମନିଷ୍ଠା, ସ୍ନେହ, ଆନନ୍ଦରେ ଭରିଦେବା ପାଇଁ ସମାଜର ବିଭିନ୍ନ ବିଭାଗରେ ବାସ୍ତବ, ଯୋଗ୍ୟ, ସଚ୍ଚୋଟ, ନିଷ୍ପାପର ଶୃଙ୍ଖଳିତ, ଆଦର୍ଶ ମଣିଷ ତଥା ଯୁଗସ୍ରଷ୍ଟା ଗଢ଼ିବା ଏହି ଶିକ୍ଷାକେନ୍ଦ୍ରର ଲକ୍ଷ୍ୟ । ୧୯୭୪ ଜାନୁୟାରୀ ୧ ତାରିଖରେ ଅବିଭକ୍ତ କଟକ ଜିଲ୍ଲାର ଉଦୟଗିରିଠାରେ ପ୍ରଥମ ଶୋଭନୀୟ ଶିକ୍ଷାଶ୍ରମ ପ୍ରତିଷ୍ଠିତ ହୋଇଥିଲା । ବହୁ ଘାତ ପ୍ରତିଘାତ ମଧ୍ୟରେ ପ୍ରାଥମିକ, ମଧ୍ୟ ଓ ଉଚ୍ଚ ବିଦ୍ୟାଳୟ ସରକାରଙ୍କ ସ୍ୱୀକୃତି ଲାଭ କରିଛି । ସରକାରଙ୍କ ଅନୁମୋଦିତ ଗଣିତ, ମାତୃଭାଷା, ପ୍ରଭୃତି ଶିକ୍ଷାଲାଭ ତଥା ପ୍ରଥମ ଶ୍ରେଣୀରୁ ନୀତିବିଜ୍ଞାନ, ଇଂରାଜୀ, ହିନ୍ଦି, ସାଧାରଣ ଜ୍ଞାନ, ପିଲାମାନଙ୍କୁ ସଙ୍ଗୀତ, ଗପ, ଖେଳ, ଅଭିନୟ ମାଧମରେ ଶିକ୍ଷା ଦିଆଯାଉଥାଏ । ପଞ୍ଚମ ଶ୍ରେଣୀରୁ ସଂସ୍କୃତ, ଯୋଗାସନ ଏବଂ ଅଷ୍ଟମ ଶ୍ରେଣୀରୁ ପିଲାଙ୍କ ରୁଚି ଓ ପ୍ରତିଭାକୁ ଅନୁଧ୍ୟାନ କରାଯାଇ ଏକ ବିଶେଷ ବିଭାଗରେ ଶିକ୍ଷା ଦିଆଯିବାର ବ୍ୟବସ୍ଥା କରାଯାଇଛି । ଓଡ଼ିଶାର ବିଭିନ୍ନ ଜିଲ୍ଲାରୁ ଛାତ୍ର ଛାତ୍ରୀମାନେ ଏହି ଶିକ୍ଷାଶ୍ରମର ଛାତ୍ରାବାସରେ ରହି ଅଧ୍ୟୟନ କରୁଛନ୍ତି ।

ସତ୍ୟବାଦି, ଶାନ୍ତିନିକେତନ ଜାତୀୟ ଛାତ୍ରାବାସ ତଥା ବିଦ୍ୟାଳୟ ମଧ୍ୟରେ, ଏହି କେନ୍ଦ୍ରମାଧ୍ୟମରେ ସର୍ବଧର୍ମ ସମନ୍ୱୟ ପ୍ରାର୍ଥନା ମନ୍ଦିର, ବିଶ୍ୱଭ୍ରାତୃତ୍ୱ ଓ ଶାନ୍ତିର ଉଦ୍ୟାନ କର୍ମମନ୍ଦିର, ସଂସ୍କୃତ ଭବନ, କଳା-ଶିକ୍ଷା କେନ୍ଦ୍ର, ମାନବିକତା ମନ୍ଦିର, ସଂଗୀତ ଭବନ, ଆଦର୍ଶ ନେତା । ପ୍ରଶାସନ ତାଲିମ ଶିବିର, ବିଜ୍ଞାନ ଶିକ୍ଷା ଗୃହ ପ୍ରଭୃତି ହେବାର ବ୍ୟବସ୍ଥା କରାଯାଉଛି ।

❒ ❒ ❒

ଠିକଣା :
ଉଦୟଗିରି ଆଶ୍ରମ, ପୋ. ଚଣ୍ଡିଆ,
ଭାୟା. ନରିଚାଙ୍ଗଳ ଡି. ଯାଜପୁର ।



Digitized by PPRACHIN, SOA

# ଯାଜପୁର ଜିଲ୍ଲାର ପାନୀୟ ଜଳ ବ୍ୟବସ୍ଥା

ଗ୍ରାମ୍ୟ ଜଳ ଯୋଗାଣ ଓ ପରିମଳ ଯାଜପୁର ଡିଭିଜନ ତା. ୧.୪.୯୪ ରିଖ ଠାରୁ ସୃଷ୍ଟି ହୋଇ ଚଣ୍ଡୀଖୋଲଠାରେ କାର୍ଯ୍ୟକରୁଅଛି । ଏହା ମୁଖ୍ୟତଃ ଗ୍ରାମ୍ୟ ପାନୀୟ ଜଳ ପ୍ରକଳ୍ପ ଖନନ, ମରାମତି ଓ ରକ୍ଷଣାବେକ୍ଷଣ, ପାଇପ ଜଳ ଯୋଗାଣ ଆଦି ଦାୟତ୍ୱ ଗ୍ରହଣ କରିଅଛି । ଏହି ଡିଭିଜନ ଅଧିନରେ ଜିଲ୍ଲାର ୧୦ ଟି ବ୍ଲକ ଉପକୃତ ହୁଅନ୍ତି ।

**ମୁଖ୍ୟ ଦପ୍ତର :**

ଗ୍ରାମ୍ୟ ଜଳ ଯୋଗାଣ ଓ ପରିମଳ ଯାଜପୁର ଡିଭିଜନ
ସା/ପୋ. - ଚଣ୍ଡୀଖୋଲ, ଯାଜପୁର ।

| | | |
|---|---|---|
| ନିର୍ବାହୀ ଯନ୍ତ୍ରୀଙ୍କ ନାମ | : | ଇଂ ରମାକାନ୍ତ ମିଶ୍ର |
| ଟେଲିଫୋନ ନଂ. | : | ୦୬୭୨୫-୨୩୩୮ |
| ସବଡିଭିଜନ ସଂଖ୍ୟା | : | ୩ |
| | | ଯାଜପୁର |
| | | ସୁକିନ୍ଦା |
| | | ଚଣ୍ଡୀଖୋଲ |

**ଯାଜପୁର ସବଡିଭିଜନ ଅଧିନରେ ଥିବା ବ୍ଲକ :**

୧) ଯାଜପୁର, ୨) ଦଶରଥପୁର, ୩) ବିଂଝାରପୁର, ୪) ରସୁଲପୁର, ୫) ବରୀ, ୬) ବଡ଼ଚଣା, ୭) ଧର୍ମଶାଳା ।

**ସୁକିନ୍ଦା ସବଡିଭିଜନ ଅଧିନରେ ଥିବା ବ୍ଲକ :**

୧) କେରୋଇ, ୨) ଦାନଗଦି, ୩) ସୁକିନ୍ଦା ।

| | |
|---|---|
| **ଚଣ୍ଡୀଖୋଲ ସବଡିଭିଜନ** | : ଗଠିତ ହୋଇଛି, ମାତ୍ର କାର୍ଯ୍ୟକାରୀ ହୋଇନାହିଁ । |
| **ଜୁନିଅର ଇଂଜିନିୟର** | : ପ୍ରତି ବ୍ଲକରେ ଜଣେ, |
| **ପରିମଳ କାର୍ଯ୍ୟକ୍ରମ** | : ଅଦ୍ୟାବଧି ଉକ୍ତ ଜିଲ୍ଲାରେ ହାତକୁ ନିଆଯାଇ ନାହିଁ । |



Digitized by PPRACHIN, SOA

**ପ୍ରଗତି ତାଲିକା (ତା. ୩୦.୦୩.୯୮ ସୁଦ୍ଧା) :**

୧) କେତୋଟି ହାଣ୍ଡପମ୍ପ କରାଯାଇଛି - ୩୯୨, ବର୍ତ୍ତମାନ ସୁଦ୍ଧା ସଚଳ ଟ୍ୟୁବୱେଲ କେତେ ? - ୬ ହଜାର ୫୬୨ ।

୩) ବର୍ତ୍ତମାନ ସୁଦ୍ଧା ଅଚଳ ଟ୍ୟୁବୱେଲ କେତେ - ୧ ହଜାର୨୪,

୪) କେତୋଟି ପ୍ଲାଟ ଫର୍ମ ତିଆରି ହୋଇଛି - ୩ ଶହ ୬୦ ।

**ପାଇପ ଜଳ ଯୋଗାଣ କାର୍ଯ୍ୟକ୍ରମର ସ୍ଥିତି :**

୧) ଧର୍ମଶାଳା :
ଜାରକା : ଚହଟା ଓ ସଂଲଗ୍ନ ଗ୍ରାମ ୧/୯୮ ରୁ କାର୍ଯ୍ୟକ୍ଷମ କୋହ୍ଲା ସାମିଲ - ୬/୯୩ ରୁ କାର୍ଯ୍ୟକ୍ଷମ, କଣ୍ଡିଗଡ଼ିଆ - ୨/୯୫ ରୁ କାର୍ଯ୍ୟକ୍ଷମ,

୨) ରସୁଲପୁର - ବ୍ରହ୍ମବରଦା - ୩/୯୨ ରୁ କାର୍ଯ୍ୟକ୍ଷମ,

୩) ଦଶରଥପୁର-ଦଶରଥପୁର - ୭/୯୪ ରୁ କାର୍ଯ୍ୟକ୍ଷମ ।

୪) ସୁକିନ୍ଦା - ତୁବୁରି- ୧୫.୮.୯୭ ରୁ କାର୍ଯ୍ୟକ୍ଷମ,

୫) ବଡ଼ଚଣା-ଛତିଆ ଓ ସଂଲଗ୍ନ ଗ୍ରାମ- ୧୨/୯୮ ରୁ କାର୍ଯ୍ୟକ୍ଷମ ।

୬) ଯାଜପୁର-ରେକେଇ ବଜାର ଜାଜପୁର- ୧୮.୮.୯୭ ରୁ କାର୍ଯ୍ୟକ୍ଷମ ।



ସୌଜନ୍ୟ :

RWSS Divn Office,

ଚଣ୍ଡୀଖୋଲ ।





Digitized by PPRACHIN, SOA

# ଯାଜପୁର ଜିଲ୍ଲାର ରାସ୍ତା ଓ କୋଠାବାଡି ନିର୍ମାଣ ସଂପର୍କୀୟ ସୂଚନା

ଡିଭିଜନ ନାମ : ପାଣିକୋଇଲି (ଆର.ଆଣ୍ଡ.ବି.) ଡିଭିଜନ ।

ସ୍ଥାପିତ : ତା. ୨୩.୧୦.୧୯୮୧ ରିଖ

ନିର୍ବାହୀଯନ୍ତ୍ରୀଙ୍କ ନାମ : ଇଂ ବାମନ କିଶୋର ସାହୁ

ଟେଲିଫୋନ ନମ୍ବର : ୦୬୭୨୬-୪୦୧୨୦ ।

**ଡିଭିଜନର ଭୌଗଳିକ ପରିସୀମା :**

ରାଜ୍ୟ ରାଜପଥ - ୫୬.୬ କି.ମି,

ମୁଖ୍ୟ ଜିଲ୍ଲା ରାସ୍ତା - ୧୧୪.୫ କି.ମି.,

ଅନ୍ୟ ଜିଲ୍ଲା ରାସ୍ତା - ୧୮୦.୦ କି.ମି.

(ବଡ଼ଚଣା ସେକ୍ସନ ଅନ୍ତର୍ଗତ ରାସ୍ତା ବ୍ୟତୀତ)

**ସବଡିଭିଜନଗୁଡ଼ିକର ନାମ ଏବଂ ସେକ୍ସନ ଗୁଡ଼ିକର ନାମ :**

୧. **ପାଣିକୋଇଲି** :

କ) ପାଣିକୋଇଲି, ଖ) ଯାଜପୁର ରୋଡ଼, ଗ) ସୁକିନ୍ଦା,

୨. **ଯାଜପୁର** :

କ) ଯାଜପୁର-୧, ଖ) ଯାଜପୁର-୨, ଗ) ଯାଜପୁର-୩

୩. **ବିଂଝାରପୁର** :

କ) ବିଂଝାରପୁର, ଖ) ସିଂହପୁର, ଗ) ମଙ୍ଗଳପୁର,

୪. **ଚଣ୍ଡୀଖୋଲ** (କୁଆଖିଆ) :

କ) ଚଣ୍ଡୀଖୋଲ, ଖ) ଧର୍ମଶାଳା, ଗ) ବରୁଁହା ।

(ଏହା ସହିତ ଚାରବାଟିଆ ଡିଭିଜନ ଅଧିନରେ ବଡ଼ଚଣା ସେକ୍ସନ ବଡ଼ଚଣା ବ୍ଲକ ଅଞ୍ଚଳରେ କାର୍ଯ୍ୟରତ)



Digitized by PPRACHIN, SOA

**ଏହି ଡିଭିଜନ ଅଧିନରେ ମୁଖ୍ୟକାର୍ଯ୍ୟ :**

କ) ବର୍ଗୁଁହା - ଯାଜପୁର ରାସ୍ତାର ବୁଢ଼ାନଦୀ ଉପରେ ଉଚ୍ଚାପୋଲ ନିର୍ମାଣ

ଖ) ବର୍ଗୁଁହା - ଯାଜପୁର ରାସ୍ତାର ଖରସୁଆଁ ନଦୀ ଉପରେ ଉଚ୍ଚ ପୋଲ ନିର୍ମାଣ ।

ଗ) ସିଂହପୁର - ଗୋବିନ୍ଦପୁର ରାସ୍ତାରେ ଖରସୁଆଁ ନଦୀ ଉପରେ ଉଚ୍ଚ ପୋଲ ନିର୍ମାଣ ।

ଘ) କୟାଁଗୋଲା- ମଙ୍ଗଳପୁର ରାସ୍ତାର ବୈତରଣୀ ନଦୀ ଉପରେ ଉଚ୍ଚ ପୋଲ ନିର୍ମାଣ ।

ଙ) ବର୍ଗୁଁହା - ବାଲିଚନ୍ଦ୍ରପୁର ରାସ୍ତାରେ ବ୍ରାହ୍ମଣୀ ନଦୀ ଉପରେ ବ୍ରହ୍ମବରଦାଠାରେ ଉଚ୍ଚ ପୋଲ ନିର୍ମାଣ ।

ଚ) ଯାଜପୁର ରୋଡ ରେଳବାଇ ଓଭରବ୍ରିଜ ସଂଲଗ୍ନ ରାସ୍ତା ନିର୍ମାଣ ।

ଛ) ଟମକା - ମଙ୍ଗଳପୁର ରାସ୍ତା ।

**ବଡ଼ଚଣା ସେକ୍ସନ ଅଧିନରେ ରାସ୍ତା : ୪ ଟି**

| | | |
|---|---|---|
| କ) | ବଡ଼ଚଣା - ଦର୍ପଣ ରାସ୍ତା | O.D.R : ୧୨.୫ କି.ମି. । |
| ଖ) | ବଡ଼ଚଣା - ବାଲିଚନ୍ଦ୍ରପୁର ରାସ୍ତା | O.D.R : ୧୨.୫ କି.ମି. । |
| ଗ) | ବର୍ଗୁଁହା : ବାଲିଚନ୍ଦ୍ରପୁର ରାସ୍ତା | O.D.R : ୧୧.୧୫୦ କି.ମି. । |
| ଘ) | ଲଳିତଗିରି - ଉଦୟଗିରି, ରତ୍ନଗିରି ରାସ୍ତା | O.D.R : ୯.୧୫ କି.ମି. । |

ଙ) ବଡ଼ଚଣା - ବାଲିଚନ୍ଦ୍ରପୁର ରାସ୍ତାର ବଡ଼ଗେଙ୍ଗୁଟି ନଦୀ ଉପରେ ଧନଞ୍ଜୟ ସେତୁ ନିର୍ମାଣ ।

***ସହରାଞ୍ଚଳରେ ଥିବା ସରକାରୀ କୋଠାବାଡ଼ି ନିର୍ମାଣ ଓ ମରାମତି କରିବା ଉକ୍ତ ବିଭାଗର ଅନ୍ୟ ଏକ କାର୍ଯ୍ୟ ।***

❒ ❒ ❒

*ସୌଜନ୍ୟ :*

ନିର୍ବାହୀ ଯନ୍ତ୍ରୀ

(R.B) ଡ଼ିଭିଜନ, ପାଣିକୋଇଲି





Digitized by PPRACHIN, SOA

# ଯାଜପୁର ଜିଲ୍ଲାର ଗ୍ରାମ୍ୟ ଉନ୍ନୟନ ସଂପର୍କୀୟ ସୂଚନା

ଡିଭିଜନ ନାମ : ଆର.ଡି. ଡିଭିଜନ, ଯାଜପୁର

**ନିର୍ବାହୀ ଯନ୍ତ୍ରୀଙ୍କ ନାମ : ଡଃ ରାଧାଶ୍ୟାମ ମହାପାତ୍ର**

ଟେଲିଫୋନ ନମ୍ବର : ୦୬୭୨୮-୨୦୦୫୯, ଘର :୦୬୭୨୬-୪୦୨୬୧

ପ୍ରତିଷ୍ଠା ତାରିଖ : ତା.୨୦/୦୯/୯୧ ମସିହା ।

ସ୍ଥାୟୀ ଅଫିସ ଗୃହ ଅଛିକି : ନାହିଁ ଭଡା ଘରେ ଚାଲିଛି ।

ସବଡ଼ିଭିଜନ ସଂଖ୍ୟା : ୪, ସେକ୍ସନ ସଂଖ୍ୟା ୧୫ ।

| | ସବ ଡିଭିଜନ | ସେକ୍ସନ |
|---|---|---|
| ୧. | ଚଣ୍ଡୀଖୋଲ | କ) କୁଆଖିଆ, |
| | | ଖ) ଧର୍ମଶାଳା |
| | | ଗ) ଚଣ୍ଡୀଖୋଲ । |
| ୨. | ଡୁବୁରି | କ) ଯାଜପୁର ରୋଡ୍, |
| | | ଖ) ଡୁବୁରି, |
| | | ଗ) ଟମକା, |
| | | ଘ) ସୁକିନ୍ଦା । |
| ୩. | ଯାଜପୁର | କ) ଯାଜପୁର-୧, |
| | | ଖ) ଯାଜପୁର-୨, |
| | | ଗ) କୋରେଇ, |
| | | ଘ) ବରୀ । |
| ୪. | ବିଂଝାରପୁର | କ) ସିଂହପୁର, |
| | | ଖ) ବିଂଝାରପୁର |
| | | ଗ) ମଙ୍ଗଳପୁର, |
| | | ଘ) ଦଶରଥପୁର । |



Digitized by PPRACHIN, SOA

ରାସ୍ତାର ପ୍ରକାର ଭେଦ : ସି.ଡି.ଆର : ୧୪୬.୬୪୭ କି.ମି.,

ମେଟାଲିଂ ରାସ୍ତା : ୪୬.୫୭୩ କି.ମି.,

ମାଟି ରାସ୍ତା : ୨୬.୯୫୪ କି.ମି.,

ଭି.ଆର : ୮୬୯.୨୪୫ କି.ମି.,

ତନ୍ମଧ୍ୟରୁ ପିଚୁ ରାସ୍ତା : ୨୫୨.୧୫୨ କି.ମି.,

ମେଟାଲ ରାସ୍ତା : ୩୭୩.୪୮୩ କି.ମି.,

ମାଟି ରାସ୍ତା : ୨୪୩.୬୧୦ କି.ମି. ।

ବଡ଼ ପୋଲ : ୧୭ ଟି । ତନ୍ମଧ୍ୟରୁ ସଂପୂର୍ଣ୍ଣ ୫ ଟି ।

କୋଠାବାଡ଼ି : ଜିଲ୍ଲାର ଗ୍ରାମାଞ୍ଚଳରେ ଅବସ୍ଥିତ ସମସ୍ତ ସରକାରୀ କୋଠାବାଡ଼ି, ଅସ୍ଥାୟୀ ପୋଲ ରକ୍ଷଣାବେକ୍ଷଣ ଓ ନିର୍ମାଣ ।

ଖରାଦିନିଆ ରାସ୍ତା : ୪ଟି ।

କ) ଗୋଲକୁଣ୍ଡ-ଇନ୍ଦୁପୁର ରାସ୍ତାରେ-୨ଟି,

ଖ) ଆକୁଳା-ପାଣିକୋଇଲି ରାସ୍ତାରେ -୨ଟି ।

ସୌଜନ୍ୟ

ହିସାବରକ୍ଷକ

*ଗ୍ରାମ୍ୟ ଉନ୍ନୟନ ଡିଭିଜନ, ଯାଜପୁର*





Digitized by PPRACHIN, SOA

# ଯାଜପୁର ଜିଲ୍ଲା ଟେଲି ଯୋଗାଯୋଗ ବ୍ୟବସ୍ଥା

ଟେଲିଯୋଗାଯୋଗ ଜିଲ୍ଲା ଇଂଜିନିୟର (D.E.T.) : ୧

କାର୍ଯ୍ୟାଳୟ ଠିକଣା : ଯାଜପୁର, ଟେଲିଫୋନ ନମ୍ବର : ୨୧୨୦୦

ଟେଲିଫୋନ ଉପଖଣ୍ଡ (S.D.O.(T)) : ୩

| | ଟେଲିଫୋନ ନମ୍ବର |
|---|---|
| (କ) ଯାଜପୁର | ୨୦୨୦୦/୨୦୬୯୦ |
| (ଖ) ଯାଜପୁର ରୋଡ୍ | ୨୦୫୦୦/୨୦୭୦୦ |
| (ଗ) ଧାନମଣ୍ଡଳ | ୨୪୫୦/୨୪୦୦ |

ମୁଖ୍ୟ ଟେଲିଫୋନ ଏକ୍ସଚେଞ୍ଜ :

| | | STD Code | Capacity : |
|---|---|---|---|
| ୧. | ଯାଜପୁର | 06728 | 1 K C-DOT |
| ୨. | ଯାଜପୁର ରୋଡ୍ | 06726 | 1.4 K C-DOT |
| ୩. | ଧାନମଣ୍ଡଳ | 06725 | 1 K C-DOT |

ଯାଜପୁର ଉପଖଣ୍ଡ ଅଧିନରେ ଏକ୍ସଚେଞ୍ଜର ନାମ :

| | | Capacity : | ଟେଲିଫୋନ ନମ୍ବର |
|---|---|---|---|
| ୧. | ଆଖୁଆପଦା | 64 P MILT | 7200 |
| ୨. | ଅଳକୁଣ୍ଡ | 128 P C-DOT | 37498 |
| ୩. | ଅଗାଳ | 64 P MILT | 38700 |
| ୪. | ବରୀ | 256 P C-DOT | 46600 |
| ୫. | ବଉଳାଙ୍ଗ | 256 P C-DOT | 58298 |
| ୬. | ବିଂଝାରପୁର | 256 P C-DOT | 30098 |
| ୭. | ବ୍ରହ୍ମବରଦା | 256 P C-DOT | 64498 |
| ୮. | ଦଶରଥପୁର | 256 P C-DOT | 54698 |
| ୯. | ନନ୍ଦିପୁର | 64 P MILT | 57106 |
| ୧୦. | ରାମବାଗ | 256 P C-DOT | 50198 |
| ୧୧. | ସିଂହପୁର | 256 P C-DOT | 35598 |
| ୧୨. | ସୁଜନପୁର | 256 P C-DOT | 47000 |



Digitized by PPRACHIN, SOA

ଯାଜପୁର ରୋଡ୍ ଉପଖଣ୍ଡ ଅଧିନରେ ଏକ୍ସଚେଞ୍ଜର ନାମ :

| | | Capacity : | ଟେଲିଫୋନ ନମ୍ବର |
|---|---|---|---|
| ୧. | ପାଣିକୋଇଲି | 128 P+256 P C-DOT | 40198 |
| ୨. | ବରୁଣେଇ | 64 P MILT | 8200 |
| ୩. | ଯଖପୁରା | 256 P C-DOT | 42598 |
| ୪. | ଡୁବୁରୀ | 256 P C-DOT | 45798 |
| ୫. | ସୁକିନ୍ଦା | 256 P C-DOT | 44498 |
| ୬. | କାଳିଆପାଣି | 256 P C-DOT | 68798 |
| ୭. | ବ୍ରାହ୍ମଣୀପାଳ | 256 P C-DOT | 43398 |
| ୮. | ଦୈତାରୀ | 64 P MILT | 4800 |

ଧାନମଣ୍ଡଳ ଉପଖଣ୍ଡ ଅଧିନରେ ଏକ୍ସଚେଞ୍ଜର ନାମ :

| | | Capacity : | ଟେଲିଫୋନ ନମ୍ବର |
|---|---|---|---|
| ୧. | କୁଆଖିଆ | 256 P C-DOT | 78798, 78799 |
| ୨. | ଜାରକା | 256 P C-DOT | 78500, 78600 |
| ୩. | କଳଣ | 64 P MILT | 78300 |
| ୪. | କୁନ୍ଦଳ | 64 P MILT | 8500 |
| ୫. | କବାଟବନ୍ଧ | 256 P C-DOT | 8900 |
| ୬. | ଚଢ଼େଇଧରା | 64 P MILT | 8100 |
| ୭. | ଛତିଆ | 256 P C-DOT | 78198 |
| ୮. | ଗଜେନ୍ଦ୍ରପୁର | 128 P C-DOT | 8498 |
| ୯. | ଅରେଇକଣା | 64 P MILT | 8600 |
| ୧୦. | ରତ୍ନଗିରି | 128 P C-DOT | 28498 |

❒ ❒ ❒



ସୌଜନ୍ୟ
ଶ୍ରୀ କଳାନିଧି ନାୟକ
S.D.O. (T) ଧାନମଣ୍ଡଳ



Digitized by PPRACHIN, SOA

# ଯାଜପୁର ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା

ଓଡିଶାର ନୂତନ ଜିଲ୍ଲା ଗଠନ ହେବାପରେ ୧୯୯୩-୯୪ ମସିହାଠାରୁ ଯାଜପୁର ଜିଲ୍ଲାରେ ଯାଜପୁର ଗ୍ରାମ୍ୟ ଉନ୍ନୟନ ସଂସ୍ଥା ଗଠନ ହେଲା । ପଞ୍ଚାୟତରାଜ ବିଭାଗର ବିଭିନ୍ନ ଗ୍ରାମ୍ୟ ଉନ୍ନୟନ ଓ ଦାରିଦ୍ର୍ୟ ଦୂରୀକରଣ ଯୋଜନା ଯଥା : ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ଯୋଜନା, ଗ୍ରାମ୍ୟ ବେକାର ଯୁବକ ଯୁବତୀମାନଙ୍କ ପାଇଁ ତାଲିମ ଜରିଆରେ ଆତ୍ମ ନିଯୁକ୍ତି, ଗ୍ରାମ୍ୟ ମହିଳା ଶିଶୁ ବିକାଶ ଯୋଜନା, ଜବାହର ରୋଜଗାର ଯୋଜନା, ପ୍ରୋତ୍ସାହନ ଜବାହର ରୋଜଗାର ଯୋଜନା, ନିଶ୍ଚିତ କର୍ମ ଯୋଗାଣ ଯୋଜନା, ଇନ୍ଦିରା ଆବାସ ଯୋଜନା, ନିୟୁତ କୂପ ଯୋଜନା ଓ କଳାପଟା ଅଭିଯାନ ଯୋଜନା ଇତ୍ୟାଦି ଯାଜପୁର ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା ଦ୍ୱାରା କାର୍ଯ୍ୟାକାରୀ କରାଯାଉଅଛି । ଏଗୁଡ଼ିକର ଆଭିମୁଖ୍ୟ ଓ ପ୍ରଗତି ସମ୍ବନ୍ଧରେ ଏକ ସୂଚୀ ସହ ସଂଲଗ୍ନ କରାଗଲା ।

ଜିଲ୍ଲାପାଳ : ଶ୍ରୀ ସଞ୍ଜୟ ରସ୍ତୋଗୀ, ଆଇ.ଏ. ଏସ.

ପ୍ରକଳ୍ପ ନିର୍ଦ୍ଦେଶକ : ଶ୍ରୀ ପ୍ରଶାନ୍ତ କୁମାର ସାମଲ

ଟେଲିଫୋନ ନମ୍ବର : (୦୬୭୨୮) ୨୦୦୫୪ ।

**ଯାଜପୁର ଜିଲ୍ଲାପରିଷଦ** : ଗଠନ ତାରିଖ ତା. ୧୫.୨.୯୭

ସଭାପତି : ଶ୍ରୀମତୀ ଅନୀଳାବାଳା ଦାସ

ଉପସଭାପତି : ଶ୍ରୀ ଦିଗାମ୍ବର କର

ଉଭୟଙ୍କ ଟେଲିଫୋନ ନମ୍ବର : (୦୬୭୨୮) ୨୦୫୮୪ ।

ମୋଟ ସଭ୍ୟସଂଖ୍ୟା : ୩୯

ତଫସିଲ ଭୁକ୍ତ ଜାତି : ୦୯

ତଫସିଲ ଭୁକ୍ତ ଉପଜାତି : ୦୩

ମହିଳା : ୧୫ ।



Digitized by PPRACHIN, SOA

## ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା, ଯାଜପୁର ଜରିଆରେ ବିଭିନ୍ନ ଦାରିଦ୍ର୍ୟ ଦୂରୀକରଣ ଯୋଜନା ପାଇଁ ଖର୍ଚ୍ଚ ହୋଇଥିବା ଅର୍ଥର ପରିମାଣ(ଲକ୍ଷରେ)

| କ୍ରମିକ ସଂଖ୍ୟା | ଯୋଜନା ଗୁଡ଼ିକର ନାମ | ୧୯୯୪-୯୫ | ୧୯୯୫-୯୬ | ୧୯୯୬-୯୭ | ୧୯୯୭-୯୮ | ମୋଟ |
|---|---|---|---|---|---|---|
| ୧. | ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ଯୋଜନା | ୨୧୮.୮୭ | ୨୨୯.୫୯ | ୨୨୦.୪୪ | ୧୯୩.୭୦ | ୮୬୨.୭୦ |
| ୨. | ଗ୍ରାମ୍ୟ ଯୁବଗୋଷ୍ଠୀଙ୍କ ଆତ୍ମନିଯୁକ୍ତି ପାଇଁ ତାଲିମ୍ କାର୍ଯ୍ୟକ୍ରମ | ୧୩.୧୮ | ୨୧.୧୮ | ୧୪.୧୧ | ୯.୭୨ | ୫୮.୧୯ |
| ୩. | ଗ୍ରାମାଂଚଳ ମହିଳା ଓ ଶିଶୁ ବିକାଶ ଯୋଜନା | ---- | ---- | ୧୦.୦୦ | ୬.୫୫ | ୧୬.୫୫ |
| ୪. | ଜବାହର ରୋଜଗାର ଯୋଜନା | ୨୩୪.୬୮ | ୩୦୯.୩୬ | ୪୮୧.୬୭ | ୪୭୫.୦୬ | ୧୫୦୦.୭୭ |
| ୫. | ପ୍ରୋତ୍ସାହନ ଜବାହର ରୋଜଗାର ଯୋଜନା | ୨୨୩.୨୮ | ୨୪୦.୫୯ | ---- | ---- | ୪୬୩.୮୭ |
| ୬. | ନିଶ୍ଚିତ କର୍ମଯୋଗାଣ ଯୋଜନା | ---- | ୫୬.୨୫ | ୪୩୮.୪୪ | ୩୨୦.୨୮ | ୮୧୪.୯୭ |
| ୭. | ଇନ୍ଦିରା ଆବାସ ଯୋଜନା | ୫୪.୭୭ | ୯୧.୮୦ | ୩୫୦.୩୩ | ୨୭୮.୮୪ | ୭୭୫.୭୪ |
| ୮. | ନିୟୁତ କୂପ ଯୋଜନା | ୧୪୯.୬୨ | ୩୬.୯୫ | ୧୬୧.୨୬ | ୧୧୪.୩୦ | ୪୬୨.୧୩ |
| ୯. | କୃଷକ କଲ୍ୟାଣଯୋଜନା | ---- | ---- | ୧୫.୫୮ | ୮.୪୪ | ୨୪.୦୨ |
| ୧୦. | ଗ୍ରାମ୍ୟ କାରୀଗରମାନଙ୍କୁ ଉନ୍ନତ ଯନ୍ତ୍ରପାତି ଯୋଗାଣ | ---- | ---- | ୭.୪୪ | ୧.୧୬ | ୮.୬୦ |
| ୧୧. | କଳାପଟା ଅଭିଯାନ ଯୋଜନା | ୫୧.୪୩ | ୧୭.୫୬ | ୫୧.୨୧ | ୧୭.୦୪ | ୧୩୭.୨୪ |



Digitized by PPRACHIN, SOA

# ବିଭିନ୍ନ ଦାରିଦ୍ର୍ୟ ଦୂରୀକରଣ ଯୋଜନା ମାଧ୍ୟମରେ ହୋଇଥିବା କାର୍ଯ୍ୟକ୍ରମ

| କ୍ରମିକ ସଂଖ୍ୟା | ବିଷୟ | ୧୯୯୪-୯୫ | ୧୯୯୫-୯୬ | ୧୯୯୬-୯୭ | ୧୯୯୭-୯୮ | ମୋଟ |
|---|---|---|---|---|---|---|
| ୧. | ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ଯୋଜନା ମାଧ୍ୟମରେ ଉପକୃତ ହୋଇଥିବା ପରିବାର ସଂଖ୍ୟା | ୫୧୨୫ | ୪୦୭୭ | ୩୫୧୩ | ୨୯୯୦ | ୧୫,୭୦୬ |
| ୨. | ଆତ୍ମନିଯୁକ୍ତି ପାଇଁ ତାଲିମପ୍ରାପ୍ତ ଗ୍ରାମ୍ୟ ଯୁବଗୋଷ୍ଠୀ ସଂଖ୍ୟା | ୭୧୬ | ୪୦୦ | ୫୬୮ | --- | ୧,୬୮୪ |
| ୩. | ଗ୍ରାମାଂଚଳ ମହିଳା ଓ ଶିଶୁ ବିକାଶ ଯୋଜନା ଜରିଆରେ ଗଠନ କରାଯାଇଥିବା ଗ୍ରାମାଂଚଳ ମହିଳା ଦଳ ସଂଖ୍ୟା | ୭ | ୧୫ | ୪୦ | ୨୬ | ୮୮ |
| ୪. | ଜବାହର ରୋଜଗାର ଯୋଜନା ମାଧ୍ୟମରେ କରାଯାଇଥିବା କାର୍ଯ୍ୟର ସଂଖ୍ୟା | ୨୩୪୧ | ୨୧୯୮ | ୨୮୫୮ | ୨୭୬୨ | ୧୦,୧୫୯ |
| ୫. | ପ୍ରୋତ୍ସାହନ ରୋଜଗାର ଯୋଜନା ମାଧ୍ୟମରେ କରାଯାଇଥିବା କାର୍ଯ୍ୟ | ୬୭୬ | ୬୭୯ | --- | --- | ୧,୩୫୫ |
| | (କ) ସୃଷ୍ଟି କରାଯାଇଥିବା ଶ୍ରମ ଦିବସ ସଂଖ୍ୟା (ଲକ୍ଷରେ) | ୫.୫୨ | ୫.୬୫ | --- | --- | ୧୧.୧୭ |
| | ଜବାହାର ରୋଜଗାର ଯୋଜନା ମାଧ୍ୟମରେ ସୃଷ୍ଟି କରାଯାଇଥିବା ଶ୍ରମ ଦିବସ (ଲକ୍ଷରେ) | ୧୧.୧୯ | ୧୧.୨୧ | ୯.୭୮ | ୯.୫୫ | ୪୧.୭୩ |
| | ନିଶ୍ଚିତ କର୍ମ ଯୋଗାଣ ଯୋଜନା ମାଧ୍ୟମରେ କରାଯାଇଥିବା କାର୍ଯ୍ୟର ସଂଖ୍ୟା | --- | ୪୧ | ୨୫୮ | ୪୪୮ | ୭୪୭ |



Digitized by PPRACHIN, SOA

| | | | | | | |
|---|---|---|---|---|---|---|
| | (ଖ) କର୍ମଯୋଜନା ମାଧ୍ୟମରେ ସୃଷ୍ଟି କରାଯାଇଥିବା ଶ୍ରମ ଦିବସ ସଂଖ୍ୟା (ଲକ୍ଷରେ) | ---- | ୧.୪୨ | ୯.୧୧ | ୬.୫୫ | ୧୭.୧୮ |
| | ଇନ୍ଦିରା ଆବାସ୍ ଯୋଜନା ମାଧ୍ୟମରେ ଦୁର୍ବଳ ଶ୍ରେଣୀର ଲୋକଙ୍କ ପାଇଁ ଯୋଗାଇଦିଆଯାଇଥିବା ଗୃହ ସଂଖ୍ୟା | ୪୦୫ | ୫୮୯ | ୨୫୮୮ | ୧୭୬୬ | ୫୩୪୮ |
| | ନିୟୁତ କୂପ ଯୋଜନାରେ ଯୋଗାଇ ଦିଆଯାଇଥିବା କୂପ ସଂଖ୍ୟା | ୧୩୮୩ | ୩୩୩ | ୬୭୮ | ୫୮୭ | ୨୯୮୧ |
| | କୃଷକ କଲ୍ୟାଣ ଯୋଜନା ମାଧ୍ୟମରେ କୃଷକମାନଙ୍କୁ ଯୋଗାଇ ଦିଆଯାଇଥିବା ନଳକୂପ ଓ ପମ୍ପସେଟ । | --- | --- | ୯୪ | ୭୫ | ୧୬୯ |
| | ଗ୍ରାମ୍ୟ କାରିଗରମାନଙ୍କୁ ଯୋଗାଇ ଦିଆଯାଇଥିବା ଉନ୍ନତ ଯନ୍ତ୍ରପାତି ସଂଖ୍ୟା | --- | --- | ୪୩୦ | ୨୨ | ୪୫୨ |
| | କଳାପଟା ଅଭିଯାନ ମାଧ୍ୟମରେ ହୋଇଥିବା ସ୍କୁଲ ସଂଖ୍ୟା | ୪୪ | ୨୦ | ୪୬ | ୨୯ | ୧୩୯ |

ସୌଜନ୍ୟ :

ଶ୍ରୀ ପ୍ରଶାନ୍ତ କୁମାର ସାମଲ

ପ୍ରକଳ୍ପ ନିର୍ଦ୍ଦେଶକ





Digitized by PPRACHIN, SOA

# ଯାଜପୁର ଜିଲ୍ଲାର ଖଣି ଓ ଶିଳ୍ପ

ଯାଜପୁର ଜିଲ୍ଲାର ପୌରାଣିକ ଐତିହ୍ୟକୁ ବାଦ୍ ଦେଲେ ଏହାର ଅନ୍ୟ ଏକ ବିଶେଷତ୍ୱ ରହିଛି ଯାହା ଯାଜପୁର ଜିଲ୍ଲାକୁ କେବଳ ଓଡ଼ିଶା ନୁହେଁ ବିଶ୍ୱ ଦରବାରରେ ଏକ ଗୁରୁତ୍ୱପୂର୍ଣ୍ଣ ଆସନର ଅଧିକାରୀ କରାଇ ପାରିଛି, ତାହା ହେଉଛି ଏହି ଜିଲ୍ଲା ମଧ୍ୟରେ ଗଚ୍ଛିତ ଥିବା ଖଣିଜ ପଦାର୍ଥ ଓ ଗଢ଼ି ଉଠୁଥିବା ଶିଳ୍ପାଞ୍ଚଳ । ସମଗ୍ର ବିଶ୍ୱର ଗଚ୍ଛିତ ଥିବା କ୍ରୋମାଇଟ୍‌ର ଶତକଡ଼ା ପ୍ରାୟ ୯୨ ଭାଗ ରହିଛି ଏହି ଜିଲ୍ଲାର ସୁକିନ୍ଦା ନିର୍ବାଚନ ମଣ୍ଡଳୀରେ । ଏତଦ୍‌ଭିନ୍ନ ଲୌହପଥର, ନିକେଲ ଆଦି ମୂଲ୍ୟବାନ ଖଣିଜ ପଦାର୍ଥ ଏଠାରେ ଗଚ୍ଛିତ ଅଛି ।

ଯାଜପୁର ଜିଲ୍ଲାର ସୁକିନ୍ଦା ପାହାଡ ପର୍ବତ ଜଙ୍ଗଲ ଘେରାରେ ଜଣେ ଆଦିବାସୀ ଲୋକ ପ୍ରଥମେ କ୍ରୋମାଇଟ ସନ୍ଧାନ ପାଇଲେ । ଏହାକୁ ନେଇ ସୁନ୍ଦର କାହାଣୀଟିଏ ମଧ୍ୟ ରହିଛି । ୧୯୪୧ ମସିହାର କଥା । ପାଦଚଲା ବନପଥରେ ଯାଉ ଯାଉ ଜଣେ ପଥିକ ସ୍ଥାନୀୟ ଆଦିବାସୀ କଟାପୂର୍ଣ୍ଣି ନମକ ଜଣେ ବ୍ୟକ୍ତିଙ୍କର ଆକସ୍ମିକ ଭାବେ ଦୃଷ୍ଟି ପଡିଥିଲା ଏହି ଧାତବ ପଦାର୍ଥ ପରି ଦେଖାଯାଉଥିବା ଉଜ୍ଜ୍ୱଳ କେତେଖଣ୍ଡ ପଥର ଉପରେ । ଏଇ କେତେଖଣ୍ଡି ପଥରକୁ ସଂଗ୍ରହ କରି ଗୃହକୁ ପ୍ରତ୍ୟାବର୍ତ୍ତନ କଲେ କଟାପୂର୍ଣ୍ଣି । ଇତିହାସ ସେ ଦିନଟକୁ ବୋଧେ ମନେ ରଖିନି । ତଥାପି ସେହି ନିର୍ଦ୍ଦିଷ୍ଟ ଦିବସ ହିଁ ସୁକିନ୍ଦାର ସୁନେଲି ଭବିଷ୍ୟତ ଉପରେ ସୂଚନା ଦେଇଥିଲା ।


ସୁକିନ୍ଦାର ଆବିଷ୍କାରକ 'କଟାପୂର୍ଣ୍ଣି'

କାରାଖାନା ପ୍ରତିଷ୍ଠା ହେବାର ଅନେକ ପୂର୍ବରୁ କେତେ ଦୁର୍ଗମ ଗିରିକନ୍ଦର, କେତେ ଅଭେଦ୍ୟ ଅରଣ୍ୟାନି ଭିତରେ ବହୁ ଅର୍ଥ ବହୁ ଶ୍ରମ ବିନିମୟରେ ହୋଇଥିଲା ଭୂତାତ୍ତ୍ୱିକ ସର୍ବେକ୍ଷଣ । ବହୁ ଅଧ୍ୟୟନ ଏବଂ ଅନୁଧ୍ୟାନ କ୍ଷେତ୍ରରେ ଟାଟାଷ୍ଟିଲ୍ ନିଜକୁ ପ୍ରତିଷ୍ଠିତ କରି ପାରିଥିଲା । ଏହି ପଥର ଖଣ୍ଡକୁ ନେଇ ଟାଟା କମ୍ପାନୀର ଭୂତତ୍ତ୍ୱବିତ୍‌ମାନଙ୍କ ପାଖରେ ପହଞ୍ଚିଲେ କଟାପୂର୍ଣ୍ଣି । କଟାପୂର୍ଣ୍ଣିଙ୍କ ପଥରକୁ ପରୀକ୍ଷା କରାଗଲା । ପରୀକ୍ଷାରୁ ଜଣାପଡ଼ିଲା ସେହି ପଥରଗୁଡ଼ିକ ହେଉଛି ବିରଳ ଖଣିଜ ପଦାର୍ଥ କ୍ରୋମାଇଟ୍ ।



Digitized by PPRACHIN, SOA

ଏହାପରେ ଟାଟା କମ୍ପାନୀର ଭୂତତ୍ତ୍ୱବିତ୍‌ମାନେ ଶ୍ରମ ସ୍ୱୀକାର ପୂର୍ବକ ଏହି ଦୁର୍ଗମ ଶ୍ୱାପଦ ସଂକୁଳ ଅଞ୍ଚଳରେ ବିସ୍ତାରିତ ସର୍ବେକ୍ଷଣ ଓ ଅନ୍ୱେଷଣ କରି ସମଗ୍ର ସୁକିନ୍ଦା ଉପତ୍ୟକାର ମୋଟ ୧୨,୫୦୦ ହେକ୍ଟର ବ୍ୟାପୀ ଭୂମିତଳେ ବିପୁଳ ପରିମାଣର କ୍ରୋମାଇଟ ଗଚ୍ଛିତ ଥିବାର ସନ୍ଧାନ ପାଇଲେ । ଟାଟାଷ୍ଟିଲ ହିଁ ପ୍ରଥମେ ପ୍ରମାଣିତ କଲା ଯେ, ଦାରିଦ୍ର୍ୟ ପ୍ରପୀଡିତ ସୁକିନ୍ଦାର ଏହି ପାର୍ବତ୍ୟ ଉପତ୍ୟକା ସ୍ୱର୍ଣ୍ଣଗର୍ଭା ।

## କ୍ରୋମାଇଟ ଖଣି ଉଦ୍ୟୋଗ :

ସେତେବେଳେ ସୁକିନ୍ଦା ଅଞ୍ଚଳ ରଜାଙ୍କ ଅଧୀନରେ ଥିଲା । ସୁକିନ୍ଦା ରଜାଙ୍କଠାରୁ ଖଣି ପଟ୍ଟାନେଇ ପ୍ରଥମେ ଟାଟାଷ୍ଟିଲ ଏହି ଅଞ୍ଚଳରେ ଖଣି ଖନନ କାର୍ଯ୍ୟ ଆରମ୍ଭ କରିଥିଲେ । ଦେଶ ସ୍ୱାଧୀନ ହେଲାପରେ ୧୩ଟି କ୍ରୋମାଇଟ ଖଣି ଖନନ କରାଗଲା ।




ଟିସ୍କୋ ସାରୁଆବିଲ, କାଳିଆପାଣି, ସାଉଥ କାଳିଆପାଣି, କଳରଙ୍ଗି, ସୁକରଙ୍ଗି, କମରଦା, ଓସ୍ତପାଳ, ଢେଙ୍କିଙ୍ଗି, ଚିଙ୍ଗୁଡିପାଳ, ଗୁରୁଜଙ୍ଗ, କାଳିଆପାଣି । ବର୍ତ୍ତମାନ ଓଡ଼ିଶା ଖଣି ନିଗମ, ଫେକର, ମିସିରଲାଲ, ବି.ସି ମହାନ୍ତି, ଇଂଫା ଓ ଓଡ଼ିଶା ଶିଳ୍ପ ନିଗମ ପ୍ରଭୃତି ଖଣି ମାଲିକମାନେ ଖଣି ଲିଜ୍ ନେଇ ଖନନ କାର୍ଯ୍ୟ କରୁଛନ୍ତି । ମିତଲ ଓ ବଡ଼ ବଡ଼ ଶିଳ୍ପଗୋଷ୍ଠୀ ଏହି ଅଞ୍ଚଳରେ ଖଣିପଟ୍ଟା ନେବା ପାଇଁ ଲୋଲୁପଦୃଷ୍ଟି ପକାଇଛନ୍ତି । ଏହା ବ୍ୟତୀତ ସୁକିନ୍ଦା ଖଣି ଉପତ୍ୟକାରେ ଲୁହାପଥର, କ୍ୱାର୍ଜାଇଟ ଓ ନିକେଲ ଧାତୁର ସନ୍ଧାନ ମିଳିଛି । ଟମକାଠାରେ ଲୁହାପଥର ଗଚ୍ଛିତ ରହିଛି । ନିକେଲ ଧାତୁର ସନ୍ଧାନ ମିଳିଥିଲେ ମଧ ଏଯାଏ ସରକାରଙ୍କ ତରଫରୁ ଉତ୍ତୋଳନ ପାଇଁ ତତ୍ପରତା ପ୍ରକାଶ ପାଇନାହିଁ । ସୁକିନ୍ଦାର କ୍ରୋମାଇଟ ବିଶ୍ୱରେ ଦୁର୍ଲ୍ଲଭ । ୪୧୮୯.୧୨୧ ହେକ୍ଟର ଅଥବା ୪୧/୮୯.୧୨୧ ସ୍କୋୟାର ମିଟର ଧରି କ୍ରୋମାଇଟ ଗଚ୍ଛିତ ହୋଇ ରହିଛି ସୁକିନ୍ଦା ଅଞ୍ଚଳରେ । ସେହିଭଳି ଟମକା ଅଞ୍ଚଳରେ ୩,୦୩୮.୦୧୭ ହେକ୍ଟର ଜମିରେ ଲୁହାପଥର ଓ ୧୮୩.୮୦ ହେକ୍ଟର ଜମିରେ ରହିଛି ତିନୋଟି କ୍ୱାର୍ଜାଇଟି ଖଣି । ବର୍ତ୍ତମାନ ସୁକିନ୍ଦା ଖଣି ଉପତ୍ୟକାରେ ୧୩ ଟି କ୍ରୋମାଇଟ ଖଣି ରହିଛି । ଟିସ୍କୋ ୪୦୬ ହେକ୍ଟର ସାରୁଆବିଲ କ୍ରୋମାଇଟ ମାଇନ୍‌ସରେ, ମିସିରାଲାଲ ୨୪୬.୮୫୮ ହେକ୍ଟର କାଳିଆପାଣି କ୍ରୋମାଇଟ ମାଇନ୍‌ସ, ଓଡ଼ିଶା । ଖଣି






Digitized by PPRACHIN, SOA

ନିଗମ ୯୭୧.୨୪୫ ହେକ୍ଟର ସାଉଥ କାଳିଆପାଣି କ୍ରୋମାଇଟ ମାଇନ୍‌ସ, ଓଡ଼ିଶା ଖଣି ନିଗମ ୫୫୨.୪୫୭ ହେକ୍ଟର କଳରଙ୍ଗି କ୍ରୋମାଇଟ ମାଇନ୍‌ସ, ଓଡିଶା ଖଣିଜ ନିଗମ ୯୩୬.୨୨୪ ହେକ୍ଟର ସୁକରଙ୍ଗି କ୍ରୋମଇଟ୍ ମାଇନ୍‌ସ, ଓଡ଼ିଶା ଖଣିନିଗମ୍ ୩୮୨.୭୦୯ ହେକ୍ଟର କମରଦା କ୍ରୋମାଇଟ ମାଇନ୍‌ସ, ବି.ସି ମହାନ୍ତି ଆଣ୍ଡ ସନସ୍ ୧୦୭.୨୪୦ ହେକ୍ଟର ଓସ୍ତପାଳ କ୍ରୋମାଇଟ ମାଇନ୍‌ସ, ଫେକର ୭୨.୮୪୩ ହେକ୍ଟର ଡଇଙ୍ଗି କ୍ରୋମାଇଟ ମାଇନ୍‌ସ, ଓଡ଼ିଶା ଶିଳ୍ପ ନିଗମ ୨୨୧.୨୨୦ ହେକ୍ଟର ଚିଙ୍ଗୁଡିପାଳ କ୍ରୋମାଇଟ ମାଇନ୍‌ସ, ଇମଫା ୨୬.୬୨୦ ହେକ୍ଟର ଗୁରୁଜଙ୍ଗ କ୍ରୋମଇଟ ମାଇନ୍‌ସ, ଏମ୍.ଲିଆକତ ୫୬.୬୫୬ ହେକ୍ଟର କମରଦା ସାରୁଆବିଲ କ୍ରୋମାଇଟ ମାଇନ୍‌ସ୍, ଓଡ଼ିଶା ଖଣି ନିଗମ ୨୩.୨୪୩ ହେକ୍ଟର ଓ ବାଲିପଡ଼ିଆ କ୍ରୋମାଇଟ ମାଇନ୍‌ସ ଖଣି ନିଗମ ୧୮୫.୮୧୦ ହେକ୍ଟର ମୋଟ ୪୧୮୯.୧୨୧ ହେକ୍ଟର ଜମିରେ ଖଣି ପଟ୍ଟାନେଇ କ୍ରୋମାଇଟ ଖନନ କରୁଛନ୍ତି । ଟାଟା କମ୍ପାନୀ ରାଜ୍ୟଠାରୁ ୧୨୬୧. ୪୭୬ ହେକ୍ଟର ଜମିର ପଟ୍ଟା ପାଇଥିଲା । ଟାଟା କମ୍ପାନୀ ୨୦ ବର୍ଷ ଲିଜ ପୂରିଗଲା ପରେ ସରକାର ୪୦୬ ହକ୍ଟର ଜମିର ପଟ୍ଟା ଲିଜ ଦେଇଛନ୍ତି । ୮୫୫.୪୭୬ ହେକ୍ଟର ଜମିରେ କାହାରିକୁ ପଟ୍ଟା ମିଳିଲା ନାହିଁ ।



ଓଡିଶା ଖଣି ନିଗମ ପକ୍ଷରୁ କାଳିଆପାଣିଠାରେ ବସାଯାଇଥିବା କ୍ରୋମ ପଥର ବେନିଫିକେସନ୍ ପ୍ଲାଣ୍ଟ ।

## ଫେରୋକ୍ରୋମ କାରଖାନା :

ଯାଜପୁର ଜିଲ୍ଲାର ଶିଳ୍ପ ବିକାଶର ମୂଳଦୁଆ ପଡ଼ିଥିଲା ୧୯୬୩ ମସିହାରେ । ଦେଶର ଗଚ୍ଛିତ ଥିବା କ୍ରୋମପଥରର ୯୬ ଭାଗ ରହିଛି ଯାଜପୁର ଜିଲ୍ଲାର ସୁକିନ୍ଦା ଖଣି ଅଞ୍ଚଳ ମଧ୍ୟରେ । ଏହାକୁ ଦୃଷ୍ଟିରେ ରଖି ଜିଲ୍ଲାର ଯାଜପୁର ରୋଡ ସହରର ଉପକଣ୍ଠରେ ଜନ୍ମ ନେଇଥିଲା ଏସିଆ ମହାଦେଶର ସର୍ବପ୍ରଥମ ରାଷ୍ଟ୍ରିୟ ଭିତ୍ତିକ ଫେରୋକ୍ରୋମ କାରଖାନା । ଓଡ଼ିଶା ଶିଳ୍ପ ଉନ୍ନୟନ ନିଗମର ଭାଡହାଣ୍ଡି ପରି ବିବେଚନା କରାଯାଇଥିବା ଏହି କାରଖାନାଟିର ବୈଷୟିକ ପରାମର୍ଶଦାତା ଥିଲେ ସୁଇଡେନ୍‌ର **'ହାରିସଇଲେ'** । ମାତ୍ର ୬.୫୦ କୋଟି ଟଙ୍କା ମୂଳଧନରେ ଆରମ୍ଭ ହୋଇଥିବା ଏହି କାରଖାନାଟି ଦୀର୍ଘ ୩୧ ବର୍ଷ ଧରି ପ୍ରାୟ ଦୁଇହଜାର ଲୋକଙ୍କୁ କାମଧନ୍ଦା ଯୋଗାଇ ଆସୁଛି । ରାଜ୍ୟ ସରକାର ଏହି କାରଖାନାଟିରୁ କୋଟି କୋଟି ଟଙ୍କାର ଟିକସ୍



Digitized by PPRACHIN, SOA

ପାଇଥିବାବେଳେ ଫେରୋକ୍ରୋମ ରପ୍ତାନୀ କରି ପ୍ରାୟ ୧୦ କୋଟି ରୁ ଅଧିକ ଟଙ୍କାର ବୈଦେଶିକ ମୁଦ୍ରା ଅର୍ଜନ କରି ପାରିଛନ୍ତି ଏହି କାରଖାନାଟିର ୩୬୭ ଏକର ଭୂସଂପତ୍ତି ସହ ନିଜସ୍ୱ ପାୱାର ପ୍ଲାଣ୍ଟ ରହିଛି । ପ୍ରାରମ୍ଭରୁ ଏହି କାରଖାନଟିରୁ ହାଇକାର୍ବନ୍ ଫେରୋକ୍ରୋମ, ଲୋ-କାର୍ବନ ଫେରୋକ୍ରୋମ, ସିଲିକୋକ୍ରୋମ ଆଦି ଉତ୍ପାଦିତ ହୋଇଥିଲା । ଗତ ୧୦ ବର୍ଷ ଧରି ଗୋଟିଏ ଚିମିନି ଅଚଳ ହୋଇପଡ଼ିଥିବାରୁ ଲୋ-କାର୍ବନ ଫେରୋକ୍ରୋମ ଉତ୍ପାଦନ ବନ୍ଦ ରହିଛି । ତତ୍କାଳୀନ ଶିଳ୍ପମନ୍ତ୍ରୀ ଚିତ୍ତରଂଜନ ନାଏକଙ୍କ ଆନ୍ତରିକ ଉଦ୍ୟମ ହିଁ ଏହି କାରଖାନାଟିକୁ ବାସ୍ତବ ରୂପ ଦେବାର ସହାୟକ ହୋଇଥିଲା ।

*ଓଠାକାର ମୁଖ୍ୟ ଟେଲିଫୋନ ନମ୍ବର* (ଏସ.ଟି.ଡ଼ି - ୦୬୭୨୬)

| | |
|---|---|
| ମୁଖ୍ୟ ପରିଚାଳକ | :୨୦୨୧୨, ୨୦୨୧୦, |
| କର୍ଯ୍ୟ ନିର୍ବାହୀ ନିର୍ଦ୍ଦେଶକ | : ୨୦୫୫୨, |
| ଅତିଥି ଭବନ | : ୨୦୩୧୮. |

## କୋଣାର୍କ ଝୋଟକଳ :




୧ ୯ ୭ ୫ ମସିହାରେ ଏହି ଜିଲ୍ଲାରେ ଶିଳ୍ପ ବିକାଶର ଅନ୍ୟ ଏକ ସୋପାନରେ ଜନ୍ମ ନେଇଥିଲା 'କୋଣାର୍କ ଝୋଟକଳ' । ୧୯୭୫ ମସିହା ଜୁନ୍ ମାସ ୨୭ ତାରିଖରେ ଯାଜପୁର ଜିଲ୍ଲାର ଧାନମଣ୍ଡଳଠାରେ ଏହି ଝୋଟକଳଟିର ନିର୍ମାଣ କାର୍ଯ୍ୟ ଆରମ୍ଭ କରାଯାଇଥିଲା । ରାଜ୍ୟ ଶିଳ୍ପଉନ୍ନୟନ ନିଗମ ଓ ନାଫେଡର ମିଳିତ ଉଦ୍ୟୋଗରେ କରାଯାଇଥିବା ଏହି ଝୋଟକଳଟିରୁ ତା. ୪.୨.୧୯୭୯ ମସିହାରେ ଉତ୍ପାଦନ ଆରମ୍ଭ ହୋଇଥିଲା । ବାର୍ଷିକ ୧୩ ହଜାର ୨୪୦ ମେଟ୍ରିକ୍ ଟନ ଉତ୍ପାଦନ କ୍ଷମତା ବିଶିଷ୍ଟ ଏହି କାରଖାନାର ପ୍ରତିଷ୍ଠା ପାଇଁ ଆଇ.ଡ଼ି.ସି. ୯୮.୩୩ ଲକ୍ଷ ଟଙ୍କା ନାଫେଡ଼ ୯୪.୬୭ ଲକ୍ଷ , ଆଇ.ଡ଼ି.ବି.ଆଇ ୩୯.୭୬ ଲକ୍ଷ, ଆଇ.ଏଫ.ସି.ଆଇ ୧୯.୮୯ ଲକ୍ଷ, ଆଇ.ସି.ଆଇ.ସି.ଆଇ ୯.୯୪ ଲକ୍ଷ, ୟୁବିଆଇ ୫.୯୭ ଲକ୍ଷ, ଆଇ.ଓ.ବି ୨.୯୫ ଲକ୍ଷ, ଆଇ.ବି. ୧.୯୪ ଲକ୍ଷ ଟଙ୍କାର ଅଂଶଧନ ଯୋଗାଇ ଦେଇଥିଲେ । ଏହା ଛଡ଼ା ବିଭିନ୍ନ ଅର୍ଥ ଲଗାଣକାରୀ



Digitized by PPRACHIN, SOA

ସଂସ୍ଥାରୁ ଋଣ ଆକାରରେ ୪.୩୮ କୋଟି ଟଙ୍କା ଓ ପବ୍ଲିକ୍ ସେୟାର ଆକାରରେ ୫୩ ହଜାର ଟଙ୍କା ଆଦାୟ କରାଯାଇଥିଲା । ଏଥିରେ ଚିନି, ସିମେଣ୍ଟ, ଆଳୁ, ଅଖ କପଡା, ସୂତୁଲି, ଉତ୍ପାଦନ ହେବାର ବ୍ୟବସ୍ଥା ରହିଛି । ଏଥିରେ ମୋଟ ୨୫୩୭ ଜଣଙ୍କୁ କାମଧନ୍ଦା ଯୋଗାଇ ଦିଆଯାଇଛି । ସେମାନଙ୍କ ମଧ୍ୟରୁ ୧୬୭୭ ଜଣ ସ୍ଥାୟୀ ଓ ଅନ୍ୟମାନେ ସାମୟିକ ଭାବେ ରହିଛନ୍ତି । ଏହି କାରଖାନା ୧୯୯୬ ମସିହାରେ ନବିକରଣ (Renovation) କରାଯାଇ ଥିବାରୁ ଏହାର ଉତ୍ପାଦିକା କ୍ଷମତା ବୃଦ୍ଧିହେବା ସଂଗେ ସଂଗେ କେତେକ ଝୋଟଜାତ ସାମଗ୍ରୀ ବିଦେଶକୁ ରପ୍ତାନି କରିପାରିଛି । ବର୍ତ୍ତମାନ ଏହା ଲାଭରେ ଚାଲିଛି । ଶ୍ରମିକମାନଙ୍କ ଅନୁପସ୍ଥିତ ହାର କମିଲେ, ମିଲର ଉତ୍ପାଦନରେ ଅଗ୍ରଗତି ଦେଖାଦେଇପାରିବ ।

ଏଠାକାର କେତୋଟି ମୁଖ୍ୟ ଟେଲିଫୋନ ନମ୍ବର (ଏସ୍.ଟି.ଡି-୦୬୭୨୫)

ଜି.ଏମ୍. : ୨୨୫୯,
ଅତିଥିଭବନ : ୨୨୭୦,
ମେନ ଗେଟ : ୨୨୨୭
ପରିଚାଳନା ନିର୍ଦ୍ଦେଶକ : ୪୦୩୮୩୭

## ଇସ୍ପାତ ଶିଳ୍ପ : ମେସ୍କୋ




ଯାଜପୁର ଜିଲ୍ଲାର ଅନ୍ୟଏକ ବିଶେଷତ୍ୱ ହେଉଛି ଇସ୍ପାତ ଶିଳ୍ପ । ଏହି ଜିଲ୍ଲାର ସୁକିନ୍ଦା ନିର୍ବାଚନ ମଣ୍ଡଳୀରେ ରାଜ୍ୟର ଦ୍ୱିତୀୟ ଏବଂ ତୃତୀୟ ଇସ୍ପାତ କାରଖାନର ନିର୍ମାଣ କାର୍ଯ୍ୟ ଖୁବ୍ ଜୋର୍‌ରେ ଆଗେଇ ଚାଲିଛି । ଚୀନ ସରକାରଙ୍କର ଅନ୍ୟତମ ଶିଳ୍ପସଂସ୍ଥା "ଚାଇନା ମେଟ୍ରୋଲୋଜିକାଲ ଏକସ୍‌ପୋର୍ଟ ଆଣ୍ଡ ଇମ୍‌ପୋର୍ଟ କରପୋରେସନ" ଓ ଭାରତର "ମିଡ଼ଇଷ୍ଟ ଇଣ୍ଡିଆ ଲିମିଟେଡ଼ର" ମିଳିତ ଉଦ୍ୟମରେ ଯାଜପୁର ଜିଲ୍ଲାର ସୁକିନ୍ଦା ନିର୍ବାଚନ ମଣ୍ଡଳୀର ଖୁରୁଣ୍ଟିଠାରେ ଗତ ୧୯୯୩ ମସିହା ଜାନୁୟାରୀ ୧୫ ତାରଖ ଦିନ ଶିଳାନ୍ୟାଶ କରାଯାଇଥିଲା । ଓଡ଼ିଶାର ଦ୍ୱିତୀୟ ଇସ୍ପାତ କାରଖାନା । ୫୩୦ କୋଟି ଟଙ୍କା ବ୍ୟୟରେ ବାର୍ଷିକ ୧୨ ଲକ୍ଷଟନ୍ ପିଗ୍ ଆଇରନ୍ ଉତ୍ପାଦନ କ୍ଷମତା ରଖିଥିବା ଏହି କାରଖାନାଟି



Digitized by PPRACHIN, SOA


ପ୍ଲାଣ୍ଟ ଭିତରେ ଆପେ ଆପେ ମାଲ ବୋଝେଇ ଓ ଖଲାସ କରୁଥିବା ମେସିନ

ପାଇଁ ପ୍ରାଥମିକ ଭାବେ ୫୫୦ ଏକର ଜମି ଯୋଗାଇ ଦିଆଯାଇଥିଲା । ଭାରତ ସରକରଙ୍କର ଉଦ୍ୟୋଗ ମେକନ ସଂସ୍ଥାକୁ ଏହାର ବୈଷୟିକ ପରାମର୍ଶଦାତା ଭାବେ ନିଯୁକ୍ତ କରାଯାଇଥିଲା । ସାଇଟ୍‌ଲେଭଲିଙ୍ଗ କାମପାଇଁ ମୋଦି କନ୍‌ଷ୍ଟ୍ରକସନ୍ କମ୍ପାନୀ, ପାଇଲିଙ୍ଗ କାମ ପାଇଁ ସିଣ୍ଟେକସ୍ ଇଣ୍ଡିଆ ଲିମିଟେଡ୍ । ପାଓ୍ୱାର ପ୍ଲାଣ୍ଟ କନ୍‌ଷ୍ଟ୍ରକସନ୍ କାମ ପାଇଁ କମ୍ପଟ୍ରନ ଗ୍ରେଭ୍‌ସ୍ ଲିମିଟେଡ୍ । ବ୍ଲାଷ୍ଟଫର୍ଣ୍ଣେସ୍ କାମ ପାଇଁ ବି ଏସ୍.ବି.କେ ବିଲଡରସ୍ । ସିଣ୍ଟେରିଙ୍ଗ ପ୍ଲାଣ୍ଟର ନିର୍ମାଣ ପାଇଁ ସ୍ୱାଇଁ କନଷ୍ଟ୍ରକସନ୍‌କୁ ପ୍ରାରମ୍ଭିକଭାବେ କାରଖାନାଟିର ନିର୍ମାଣ ଦାୟିତ୍ୱ ଅର୍ପଣ କରାଯାଇଥିଲା । ପ୍ରାୟ ୮୦ ଭାଗ ନିର୍ମାଣ କାର୍ଯ୍ୟ ଶେଷ ହୋଇଛି । ଏହି କାରଖାନାକୁ ବିଦ୍ୟୁତ୍ ଯୋଗାଣ ପାଇଁ ଖୁରିଣ୍ଟିଠାରେ ଗ୍ରିଡ୍‌କୋ ପକ୍ଷରୁ ଏକ ସବ୍‌ଷ୍ଟେସନ୍ ପ୍ରତିଷ୍ଠା କରାଯାଇଛି । ଏହି କାରଖାନାଟି ସଂପୂର୍ଣ୍ଣ ହେଲେ ପ୍ରାୟ ୧୧ ଶହ ବେକାରଙ୍କୁ ପ୍ରତ୍ୟକ୍ଷ କର୍ମନିଯୁକ୍ତି ଓ ୧୦ ହଜାର ଲୋକଙ୍କୁ ପରୋକ୍ଷରେ କର୍ମନିଯୁକ୍ତି ସୁବିଧା ମିଳିପାରିବ । ଏହି କାରଖାନାଟି ପାଇଁ ଟମକା, ଦୈତାରୀ, ଗନ୍ଧମାର୍ଦ୍ଦନ ଆଦି ଲୌହଖଣିରୁ ଲୁହାପଥର ଅଣାଯିବ ଓ ୧୮ କିଲୋମିଟର ଦୂର ବ୍ରାହ୍ମଣୀ ନଦୀରୁ ପାଇପ୍ ଲାଇନ୍ ସାହାଯ୍ୟରେ ଜଳ ଅଣାଯିବ । ମାତ୍ର ନିର୍ମାଣର ଦୁଇ ବର୍ଷ ମଧ୍ୟରେ ଉତ୍ପାଦନ ହେବା ଲକ୍ଷ୍ୟନେଇ ଗତ ୧୯୯୩ ଡ଼ିସେମ୍ବର ମାସଠାରୁ ଏହାର ନିର୍ମାଣ କାର୍ଯ୍ୟ ଆରମ୍ଭ କରାଯାଇଥିଲେ ମଧ୍ୟ ଦୀର୍ଘ ୫ ବର୍ଷ ପରେ ଅଦ୍ୟାବଧି ଏହା ଅସଂପୂର୍ଣ୍ଣ ହୋଇ ରହିଛି । ତେବେ ଖୁବ୍ ଶ୍ରୀଘ୍ର କାରଖାନାଟିରୁ ଉତ୍ପାଦନ ଆରମ୍ଭ ହେବ ବୋଲି କମ୍ପାନୀ ପକ୍ଷରୁ କୁହାଯାଇଛି ।


ପିଗ୍ କାଷ୍ଟିଂ ମେସିନ

*ମେସ୍କୋ ଓଠାକାର ମୁଖ୍ୟ ଟେଲିଫୋନ ନମ୍ବର (ଏସ୍.ଟି.ଡି - ୦୬୨୨୬)*

✆ ୨୦୧୪୮, ୨୦୧୫୧, ୨୦୧୮୬, ୨୦୮୦୭, ୨୦୯୭୩, ୨୧୨୬୭, ୨୧୨୨୭, ୨୧୨୨୮



Digitized by PPRACHIN, SOA


ନିର୍ମାଣ ପଥେ ନୀଳାଚଳ

**ନୀଳାଚଳ :**

ଅପର ପକ୍ଷରେ ମେଷ୍ଟୋ କାରଖାନାର ନିର୍ମାଣ କାର୍ଯ୍ୟ ଖୁବ୍ ଦୃତ ବେଗରେ ଆଗେଇ ଚାଲିଛି । ନୀଳାଚଳ ଇସ୍ପାତ ନିଗମ ପକ୍ଷରୁ ବାର୍ଷିକ ୧୦ ଲକ୍ଷ ଟନ ପିଗ୍ ଆଇରନ୍ ଉତ୍ପାଦନ କ୍ଷମ ଏହି କାରଖାନା ଲାଗି ୨୬୩୨ ଏକର ଜମି ଯୋଗାଇ ଦିଆଯାଇଛି । ଏଥି ମଧ୍ୟରୁ ୨୧୨୨ ଏକର ସରକାରୀ ଓ ୫୧୦ ଏକର ବେସରକାରୀ ଜମି । ଏହି କାରଖାନା ଦ୍ୱାରା ପ୍ରାୟ ୬୦୩ ଟି ପରିବାର ବାସଚ୍ୟୁତ ହୋଇଛନ୍ତି । ପ୍ରାୟ ୨୫ ବର୍ଷ ପୂର୍ବରୁ ଡି.ଏସ୍.ଆଇ ଦ୍ୱାରା ଏହି କାରଖାନାଟିକୁ ଏଠାରେ ପ୍ରତିଷ୍ଠା ପାଇଁ ଅନୁମୋଦନ କରାଯାଇଥିଲା । ସ୍ୱର୍ଗତ ଇନ୍ଦିରାଗାନ୍ଧୀଙ୍କ ପ୍ରଧାନମନ୍ତ୍ରୀତ୍ୱ ସମୟରେ କେନ୍ଦ୍ରସରକାରଙ୍କ ପକ୍ଷରୁ ଏହି କାରଖାନା ପ୍ରତିଷ୍ଠା ଲକ୍ଷ୍ୟନେଇ ନିଳାଚଳ ଇସ୍ପାତ ନିଗମ ଗଠନ କରାଯାଇଥିଲା । ଗତ ଜନତା ଦଳ ସରକାର ଅମଳରେ ଏହାକୁ କେନ୍ଦ୍ରସରକାରଙ୍କର ନିୟନ୍ତ୍ରିଣରୁ ଆଣି ରାଜ୍ୟ ସରକାରଙ୍କୁ ପ୍ରଦାନ କରାଯାଇଥିଲା । ଏହି କାରଖାନା ଲାଗି ଇଟାଲିରୁ ୭୦ କୋଟି ଟଙ୍କାର ପୁରାଣ ମେସିନ୍ କ୍ରୟ କରାଯାଇଥିଲା । ପ୍ରାୟ ଦୁଇ ହଜାର କୋଟି ଟଙ୍କା ବ୍ୟୟରେ ନିର୍ମାଣଧିନ ଏହି କାରଖାନାଯି ପାଇଁ ରାଜ୍ୟସରକାରଙ୍କ ପକ୍ଷରୁ ମାତ୍ର ୭୫ କୋଟି ଟଙ୍କା ଦିଆଯାଇଥିବା ବେଳେ, ଏମ୍.ଏମ୍.ଟି.ସି ପକ୍ଷରୁ ୧୪୯ କୋଟି ଟଙ୍କା ଦିଆଯାଇଛି । ଅବଶିଷ୍ଟ ୧୭୭୫ ଟଙ୍କା ରାଜ୍ୟ ବାହାରର ୨୧ ଟି ଅର୍ଥଲଗାଣ କାରୀ ସଂସ୍ଥାଙ୍କ ଠାରୁ ପବ୍ଲିକ ମନି ହମାବୟ ନିଆଯିବ । ଦୁଇହଜାର ମସିହାରେ ଉତ୍ପାଦନ ଆରମ୍ଭ ହେବା ଲକ୍ଷ୍ୟ ନେଇ ଏହାର ନିର୍ମାଣ କାର୍ଯ୍ୟ ଖୁବ୍ ଦୃଢ଼ ବେଗରେ ଆଗେଇ ଚାଲିଛି ।

*ଓଠାକାର ମୁଖ୍ୟ ଟେଲିଫୋନ ନମ୍ବର (ଏସ୍.ଟି.ଡି - ୦୬୭୨୬)*

✆ ୪୫୭୬୮, ୪୫୭୨୭, ୪୫୭୧୨, ୪୫୭୬୭ ।

❒❒❒

ସୌଜନ୍ୟ

**ଅଭିମନ୍ୟୁ ମିଶ୍ର**
ଜିଲ୍ଲା ପ୍ରତିନିଧି ଧରିତ୍ରୀ
**ସଂଜୟ କୁମାର ଦାଶ**
ପ୍ରତିନିଧି, ସମୟ



Digitized by PPRACHIN, SOA

# ଯାଜପୁର ଜିଲ୍ଲାର
# କେତୋଟି ଦେବସ୍ଥଳୀ ଓ ପରମ୍ପରା

ହିନ୍ଦୁ ଧାର୍ମିକ ଚେତନାରେ ଯାଜପୁର ସ୍ଥାନ ଅଦ୍ୱିତୀୟ ଏହି ଜିଲ୍ଲା ଅନ୍ତର୍ଗତ ମହାବିନାୟକ ପୀଠକୁ ସିଦ୍ଧ ବା ଗଣେଶ କ୍ଷେତ୍ର ଓ ଶକ୍ତି କ୍ଷେତ୍ରରୂପେ ବିରଜା, ଯାଜପୁରକୁ ପୁରାଣରେ ସ୍ୱୀକୃତି ଦିଆଯାଇଛି । ଆମ ଜିଲ୍ଲାରେ ପ୍ରଚଳିତ ଦୁଇଟି ପଞ୍ଜିକା ମଧ୍ୟରୁ ବିରଜା ପଞ୍ଜିକା ଏହି ଜିଲ୍ଲାରୁ ପ୍ରକାଶ ପାଇଥାଏ । ସମଗ୍ର ଜିଲ୍ଲାର ବିଭିନ୍ନ ପ୍ରାନ୍ତରେ ବହୁ ଦେବାଦେବୀ ମନ୍ଦିର ଧାର୍ମିକ ସ୍ଥଳ ଓ ପରମ୍ପରା ରହିଛି । ସ୍ୱଳ୍ପ ସମୟ ମଧ୍ୟରେ ସେଗୁଡ଼ିକ ମଧ୍ୟରୁ ସଂଗୃହିତ କେତେକ ତଥ୍ୟ ପ୍ରକାଶ କରୁଛୁ । ଯେଉଁ ସ୍ଥାନ ଓ ପରମ୍ପରା ସମ୍ପର୍କରେ ଆମେ ତଥ୍ୟ ଦେଇପାରୁନାହୁଁ ସେଥିପାଇଁ କ୍ଷମା ମାଗୁଛୁ ।

— ସଂପାଦକ

## ସନ୍ଥ ଅରକ୍ଷିତ ଓ ଓଳାଶୁଣୀ ଗୁମ୍ଫା

ପବିତ୍ର ଉତ୍କଳର ପ୍ରଭାସତୀର୍ଥରେ ଯେଉଁ ସନ୍ଥ, ସାଧକ, ମହାପୁରୁଷ ଓ ଧର୍ମପ୍ରଚାରକ ପଦଚିହ୍ନ ଏବେ ବି ସୁସ୍ପଷ୍ଟ ସେମାନଙ୍କ ଭିତରେ ଅଷ୍ଟାଦଶ ଶତାବ୍ଦୀର ସାଧକ ନିର୍ଗୁଣ ବ୍ରହ୍ମବାଦୀ, ନିରାକାର ପନ୍ଥୀ ଓଳାଶୁଣୀ ଗୁମ୍ଫାର ସାଧକ ଅରକ୍ଷିତ ଦାସ ଅନ୍ୟତମ । ଗଂଜାମ ଜିଲ୍ଲା ବଡ଼ଖେମୁଣ୍ଡି ରାଜବଂଶରେ ୧୭୭୨ ମସିହାରେ ଯୁବରାଜ ବଳଭଦ୍ରଦେବଙ୍କ ଜନ୍ମ । ଗୌତମ ବୁଦ୍ଧଙ୍କ ପରି ସେ ୧୮ ବର୍ଷ ବୟସରେ ଗୃହତ୍ୟାଗୀ ହୋଇଥିଲେ । ରାଜ୍ୟର ବହୁ ଦେବାଦେବୀ ମନ୍ଦିର, ମଠ, ବଣଜଙ୍ଗଲ, ଜନପଦ ପରିଭ୍ରମଣ କରି ବଡ଼ଚଣା ବ୍ଲକ୍ ପଲାଇ ମୌଜାସ୍ଥିତ ଓଳାଶୁଣୀ ପୀଠଠାରେ ଚଣ୍ଡୀଙ୍କୁ ସନ୍ତୁଷ୍ଟ କରି ନିଜ ସାଧନା ପଥରେ ବ୍ରତୀ ହୋଇଥିଲେ । କେନ୍ଦ୍ରାପଡ଼ାର ତତ୍କାଳୀନ ଜମିଦାର ରାଧାଶ୍ୟାମ ନରେନ୍ଦ୍ର ତାଙ୍କୁ ଏହି ଓଳାଶୁଣୀ ପାହାଡ଼ ଦାନ କରିଥିଲେ । ତାଙ୍କ ଦ୍ୱାରା ପ୍ରଚାରିତ ବ୍ରହ୍ମ ଅବଧୂତବାଦ ପ୍ରସାର ଦିଗରେ ଏବେ ଏହି ଓଳାଶୁଣୀ ମଠ କାର୍ଯ୍ୟରତ । ୧୮୭୫ ମସିହାରେ ସନ୍ଥ ଏହିଠାରେ ସମାଧି ଗ୍ରହଣ କରିଥିଲେ । ତାଙ୍କ



ସନ୍ଥ ଅରକ୍ଷିତ ଦାସଙ୍କ ପବିତ୍ର ସମାଧି ପୀଠ



Digitized by PPRACHIN, SOA

ସ୍ମୃତିକୁ ଉଜ୍ଜୀବିତ କରି ରଖିବାଲାଗି ପ୍ରତିବର୍ଷ ମାଘ କୃଷ୍ଣ ଏକାଦଶୀ ତିଥିରେ ସନ୍ଥ ଅରକ୍ଷିତଙ୍କ ଶ୍ରାଦ୍ଧୋତ୍ସବରେ ୭ ଦିନ ଧରି ପ୍ରସିଦ୍ଧ ଓଳାଶୁଣୀ ଯାତ୍ରା ଅନୁଷ୍ଠିତ ହୁଏ । ସେଠାରେ ଏବେ ମହାପୁରୁଷଙ୍କ ପାଷାଣ ବିଗ୍ରହ ମଧ୍ୟ ପୂଜା ପାଉଛି । ମହାପୁରୁଷଙ୍କ ବିରଚିତ ଆତ୍ମଜୀବନୀ ହେଲା ମହୀମଣ୍ଡଳ ଗୀତା । ଏହି ଗ୍ରନ୍ଥ ସହିତ ଅନ୍ୟାନ୍ୟ ବହୁ ଗ୍ରନ୍ଥ ପ୍ରାଚୀନ ପୋଥିରୁ ସଂଗୃହୀତ ହୋଇ ପ୍ରକାଶିତ ହୋଇଛି । ଏହା ଭକ୍ତ, ଜିଜ୍ଞାସୁ ଓ ପର୍ଯ୍ୟଟକମାନଙ୍କ ପାଇଁ ବେଶ୍ ରମଣୀୟ ସ୍ଥାନ ।

## ଶୁଖୁଆପଡ଼ା : ପଥର ଦେହରେ କଳାର କବିତା

ବଡ଼ଚଣା ନିର୍ବାଚନ ମଣ୍ଡଳୀର ଶୁଖୁଆପଡ଼ା (ସୁଖଲା)- ଲଣ୍ଡା ଓ ପାରାଭାଡ଼ି ଦୁଇଟି ପ୍ରାଚୀନ ଗିରିଶୃଙ୍ଗ । ଏହା ବିଶ୍ୱପ୍ରସିଦ୍ଧ ବୌଦ୍ଧପୀଠ ଲଳିତଗିରି ସଂଲଗ୍ନ ଏକ ଗିରିମେଖଳା ପରିବେଷ୍ଟିତ ଭୂଖଣ୍ଡ । ପାରାଭାଡ଼ି ଶୃଙ୍ଗର ପାଦଦେଶରେ ପାହାଡ଼ର ଉତ୍ତର ଦିଗରେ ଧାର କଟାଯାଇ ଗୋଟିଏ ଲମ୍ବା ଥାକ ଦୃଷ୍ଟି ପଥାରୂଢ଼ ହୁଏ । ଲୋକେ ଏହାକୁ ହାତୀଖୋଲ ବା ହାତୀଗୁମ୍ଫା କୁହନ୍ତି । ଊନବିଂଶ ଶତାବ୍ଦୀ ପୂର୍ବରୁ ଏହି ପାହାଡ଼ ଗୁମ୍ଫାଟି ଏକ ବିରାଟ ପଦ୍ମପାଣି ଅବଲୋକିତେଶ୍ୱର ବୌଦ୍ଧ ମୂର୍ତ୍ତିର କ୍ରମୋଚ୍ଚ ପାବଚ୍ଛ ଶ୍ରେଣୀ ଥିଲା । ଲଣ୍ଡାପାହାଡ଼ର ଶୃଙ୍ଗଟି ପାରାଭାଡ଼ି ଶୃଙ୍ଗର ଭିତ୍ତି ଆଡ଼କୁ ଖସିଯାଇଛି । ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କ ମତରେ ଏହି ଦୁଇ ଶୃଙ୍ଗର ମଧ୍ୟ ଭାଗରେ ଥିବା ଗିରିପଥରେ ଗୋଟିଏ ପ୍ରାଚୀନତମ ବୌଦ୍ଧ ପୀଠସ୍ଥଳୀ ଥିଲା । ଏହିସବୁ ଅଞ୍ଚଳରୁ ୮୫ରୁ ଊର୍ଦ୍ଧ୍ୱ ଅଧିକ ଭାସ୍କର୍ଯ୍ୟ ଓ ତତ୍‌ସଂଲଗ୍ନ ସଂକେତ ଯାହା କି ଶାଣ ପଥରରେ ପ୍ରଦର୍ଶିତ ହୋଇଛି । ୧୮୬୯ ମସିହାରେ ଯାଜପୁରର ତତ୍‌କାଳୀନ ଏସ୍.ଡି.ଓ. ଶ୍ରୀ ସି.ଏସ୍. ବାନାର୍ଜୀ ଉଦୟଗିରି-ଲଳିତଗିରି ବୌଦ୍ଧପୀଠ ପରିଦର୍ଶନ କଲାବେଳେ ଏଠାରେ (ଶୁଖୁଆପଡ଼ା ଅଞ୍ଚଳରେ) ଏକ ଅବଲୁପ୍ତ ବାସୁଳି ମନ୍ଦିର ସମ୍ପର୍କରେ ବଂଗଳାର ରୟାଲ ଏସିଆଟିକ୍ ସୋସାଇଟି ଜର୍ଣ୍ଣାଲରେ ଲିପିବଦ୍ଧ କରିଛନ୍ତି । ଏହି ପାରାଭାଡ଼ି ପାହାଡ଼ର ଶୀର୍ଷ ଦେଶରେ ଏବେ ଏକ ଗୁରୁତ୍ୱପୂର୍ଣ୍ଣ ଅଣୁତରଙ୍ଗ ଗମ୍ବୁଜ ବା ଦୂରଭାଷ ସ୍ତମ୍ଭ (Micro-wave Tower) ନିର୍ମିତ । ଏହି ପାହାଡ଼ର ବୌଦ୍ଧକୀର୍ତ୍ତି ସ୍ମାରକୀର ସଂରକ୍ଷଣ ପାଇଁ ଏହାର କେତେକ ଅଂଶ ରାଜସ୍ୱ ବିଭାଗ ଓ ବନ ବିଭାଗରୁ ପ୍ରତ୍ନତତ୍ତ୍ୱ ସଂରକ୍ଷଣ ବିଭାଗ (A.S.I)କୁ ହସ୍ତାନ୍ତର କରାଯାଇଛି ।

ଶୁଖୁଆପଡ଼ା ଏକ ପାରମ୍ପାରିକ ଶିଳ୍ପୀକୂଳଙ୍କ ପ୍ରାଚୀନ ଗାଁ । ଏହାର ମୋଟ ୩୮ଟି ପରିବାର ମଧ୍ୟରୁ ଅଧିକାଂଶ ପଥର କାଟି, ମୂର୍ତ୍ତି ଓ ଯାବତୀୟ ଗୃହୋପକରଣ ତିଆରି କରନ୍ତି । ୧୯୮୬ ମସିହାରେ ପ୍ରଥମେ ଏଠାରେ ଅରକ୍ଷିତ ଦାସ ଷ୍ଟୋନକଟର୍ ସୋସାଇଟି ପ୍ରତିଷ୍ଠିତ ହୋଇଥିଲା । ଏଠାକାର ବଉଳମାଳା ପଥର ବେଶ୍ ପ୍ରସିଦ୍ଧ । ଗ୍ରାମରୁ ୭୦ ଜଣ ଉଦୀୟମାନ ଭାସ୍କର୍ଯ୍ୟ ଶିଳ୍ପୀ ଭାରତର ବିଭିନ୍ନ ସ୍ଥାନରେ ପଥର ଶିଳ୍ପ କର୍ମରେ ନିୟୋଜିତ । ଶିଳ, ଶିଳପୁଆ, ପାଇକା, ଘୋରଣା, ଚନ୍ଦନ ପେଡ଼ି, ଝରକା



Digitized by PPRACHIN, SOA

ବନ୍ଧ, ଚଉଁରା ଇତ୍ୟାଦି ସହ ବିଭିନ୍ନ ଦେବାଦେବୀ ମୂର୍ତ୍ତିଗୁଡ଼ିକ ଏଠାରେ ତିଆରି ହୋଇ ବିଭିନ୍ନ ସ୍ଥାନରେ ବିକ୍ରିପାଇଁ ଯାଉଛି । ଏହି ପ୍ରାଚୀନ ଶିଳ୍ପୀ ଓ ଶିଳ୍ପକୁ ରକ୍ଷା କରିବା ପାଇଁ ସରକାରୀ ପ୍ରୋତ୍ସାହନର ଆବଶ୍ୟକତା ରହିଛି । ଏଠାରୁ ତିଆରି ମନୋରମ ପ୍ରସ୍ତର ଶିଳ୍ପ ସାମଗ୍ରୀ ୫ ନମ୍ବର (କ) ଜାତୀୟ ରାଜପଥ କଡ଼ର ବନ୍ଦରେଶ୍ୱର ଛକରୁ କିଣିବାକୁ ମିଳୁଛି ।

## ରତ୍ନଗିରିର ମହାକାଳ ଓ ଚାଙ୍ଗୁଡ଼ା ଯାତ୍ରା :-

ବରୀ ନିର୍ବାଚନ ମଣ୍ଡଳୀ ଅନ୍ତର୍ଗତ ବିଖ୍ୟାତ ରତ୍ନଗିରି ବୌଦ୍ଧ ମହା-ବିହାରଠାରେ ଖ୍ରୀଷ୍ଟୀୟ ୬ଷ୍ଠ ଶତାବ୍ଦୀରେ ନିର୍ମିତ ପ୍ରାଚୀନ ମହାକାଳ ମନ୍ଦିର ଏବେ ମହାକାଳ ଗର୍ଭରେ ଲୀନ ହେବାକୁ ବସିଛି । କେନ୍ଦ୍ର ମାନବସମ୍ବଳ ବିକାଶ ମନ୍ତ୍ରଣାଳୟ ଅଧୀନରେ ଥିବା ଭାରତୀୟ ପ୍ରତ୍ନତତ୍ତ୍ୱ ସଂରକ୍ଷଣ ବିଭାଗ ପକ୍ଷରୁ ପ୍ରଥମେ ୧୯୫୮ ମସିହା ଡିସେମ୍ବର ମାସରେ ବିଶିଷ୍ଟ ପତ୍ନତତ୍ତ୍ୱ ବିଶାରଦ ଡଃ. ଦେବଳା ମିଶ୍ରଙ୍କ ଦ୍ୱାରା ରତ୍ନଗିରିର ଉତ୍ଖନନ ସମୟରେ ଲୋକଲୋଚନକୁ ଆସିଥିବା ଏହି ୧୪୦୦-୧୫୦୦ ବର୍ଷ ତଳର ପ୍ରାଚୀନତମ ମହାକାଳ ମନ୍ଦିରକୁ ପ୍ରତ୍ନତତ୍ତ୍ୱ ବିଭାଗ ନିଜ ଦଖଲକୁ ଆଣି ପାରି ନ ଥିଲେ । ବୌଦ୍ଧ ସଭ୍ୟତା ଓ ସଂସ୍କୃତିର ମୂଳଭିତ୍ତିକୁ ନେଇ ଗଢ଼ି ଉଠିଥିବା ଏହି ମନ୍ଦିରଟି ସମୟ ସୁଅରେ ହିନ୍ଦୁ ସମାଜ ଦ୍ୱାରା ଶୈବ କ୍ଷେତ୍ର ରୂପେ ପୂଜା ପାଇ ଆସୁଛି । ମନ୍ଦିର ଗର୍ଭ ଗୃହରେ ପୂଜିତ ବିଗ୍ରହ ମହାକାଳ ଗଣେଶଙ୍କ ପରି ଲମ୍ବୋଦର । ତାଙ୍କ ଦକ୍ଷିଣ ହସ୍ତରେ ତୀକ୍ଷ୍ଣ ଛୁରିକା ଏବଂ ବାମ ହସ୍ତରେ ହେରୁକ ଭଳି ନରମୁଣ୍ଡ ଖପୁରୀର ମାଳ ରହିଛି । ଭାରତର ଅନ୍ୟସ୍ଥାନରେ ମହାକାଳ ବ୍ରଜ୍ରଧାରୀ ହୋଇଥିଲେ ମଧ ରତ୍ନଗିରିର ମହାକାଳ ତାହାର ବ୍ୟତିକ୍ରମ । ମହାକାଳଙ୍କ ବିଗ୍ରହଟି ତ୍ରୈଲୋକ୍ୟ ବିଜୟ ପ୍ରକାରର ମୂର୍ତ୍ତି । ମନ୍ଦିର ମଧରେ ରହିଛି ବୌଦ୍ଧମୂର୍ତ୍ତି ସଂକଳିତ କେତେଗୁଡ଼ିଏ କାନ୍ଥ ଠଣା । ମନ୍ଦିର ସୀମା ମଧରେ ରହିଛି ଗୋଟିଏ ପଦ୍ମହସ୍ତ ତାରା ମୂର୍ତ୍ତି ।

ହିନ୍ଦୁ ଧର୍ମର ନୀତି ଓ ପରମ୍ପରା ଅନୁଯାୟୀ ପୂଜିତ ଏହି ଦେବ ବିଗ୍ରହଙ୍କ ନିକଟରେ ପ୍ରତିବର୍ଷ ମହାବିଷୁବ ପଣାସଂକ୍ରାନ୍ତି ଦିନ ପ୍ରସିଦ୍ଧ ଚାଙ୍ଗୁଡ଼ା ବୁଡ଼ା ଯାତ୍ରା ଅନୁଷ୍ଠିତ ହୋଇଥାଏ । ଏକ ସୁସଜ୍ଜିତ ଚାଙ୍ଗୁଡ଼ାକୁ ସମାରୋହରେ ଅଣାଯାଇଥାଏ । ଭକ୍ତମାନେ ଛତୁ, ବେଲ, ଫୁଟି, ତରଭୁଜ, ଆମ୍ବ, କଦଳୀ, ନଡ଼ିଆ ଇତ୍ୟାଦି ପଣା ମହାକାଳଙ୍କୁ ମହାଭିଷ୍ଟ ଯୋଗରେ ଅର୍ପଣ କରିଥା'ନ୍ତି । ପଣା ସଂକ୍ରାନ୍ତି ପୂର୍ବ ଦିନ ଅର୍ଥାତ୍ ମାସନ୍ତ ଦିନ ହୋମ ପୂଜାର୍ଚ୍ଚନା କରାଯାଏ ଓ ସଂକ୍ରାତି ଦିନ ତିନିଥର ବଡ଼ ସିଂହାର ବେଶ ହୁଏ । ବ୍ରାହ୍ମଣ ଶାସନର ମୁଖ୍ୟ ବଡ଼ପଣ୍ଡା ଚନ୍ଦନ, ସିନ୍ଦୁର, ହଳଦୀ ଚର୍ଚ୍ଚିତ କଳସୀରେ ପୁଷ୍ପ ବିମଣ୍ଡିତ କଞ୍ଚା ଆମ୍ବ ଓ ମହାକାଳ ମୂର୍ତ୍ତି ଧରି କେଲୁଅ ନଦୀର ଏକ ନିର୍ଦ୍ଧାରିତ ଗଣ୍ଡକୁ ବୁଡ଼ ପକାଇବାକୁ ଯାଆନ୍ତି । ଏହାକୁ ବାର ଗାଁ ଓ ଛତିଶ ପାଟକର ମୁଖ୍ୟମାନେ ବେତ୍ରଧରି ଏହାର ସୁରକ୍ଷା, ଶୃଙ୍ଖଳା ଓ ସମ୍ମାନ ରକ୍ଷା ନିମିତ୍ତ ଚକ୍ରାକାର ଘେର ମଧରେ ଏହି ଚାଙ୍ଗଡ଼ାଧାରୀ ବଡ଼ପଣ୍ଡାଙ୍କୁ ନେଇଥାନ୍ତି । ଶଙ୍ଖ, ମହୁରୀ, ମାଦଳ, ଘଣ୍ଟା ନିନାଦ ଭିତରେ ଚାଙ୍ଗଡ଼ା ଭିତରେ ଥିବା ଆମ୍ବକୁ ନେବାପାଇଁ ଭକ୍ତମାନଙ୍କ ମଧରେ ପ୍ରତିଯୋଗିତା ଚାଲେ



Digitized by PPRACHIN, SOA

ବେତ୍ରାଘାତକୁ ଭ୍ରୂକ୍ଷେପ ନ କରି । ବନ୍ଧ୍ୟାନାରୀଙ୍କ ପାଇଁ ଏହି ଆମ୍ବ ମୁଖ୍ୟ ପ୍ରସାଦ ଭାବେ ସ୍ୱୀକୃତ ।

ରତ୍ନଗିରିର ଦଳେଇମାନେ ମହାକାଳଙ୍କ 'ଦଇତା' ନାମରେ ପରିଚିତ । ପଣାସଂକ୍ରାନ୍ତି ପୂର୍ବରୁ ସେମାନେ ଗାଁ ଗାଁରେ ବୁଲି ହବିଷ ଖାଇ ଘଣ୍ଟପାଟୁଆ ବେଶ ଧାରଣ କରିଥା'ନ୍ତି ଓ ଚାଙ୍ଗଡ଼ା ଯାତ୍ରାବେଳେ ମଧ ନୃତ୍ୟଗୀତ ଗାନରେ ମଜ୍ଜିଥା'ନ୍ତି । ରତ୍ନଗିରିର ୧୦ଟି ବ୍ରାହ୍ମଣ ପରିବାର ପକ୍ଷରୁ ଏହାର ସୁପରିଚାଳନା କରାଯାଉଛି ।

**ହିଙ୍ଗୁଳା ଯାତ୍ରା :-**

ଶଙ୍ଖଚିଲାଠାରେ ଅନୁଷ୍ଠିତ ହୁଏ ପ୍ରସିଦ୍ଧ ହିଙ୍ଗୁଳା ମେଳା । ଏ ଅବସରରେ ଯଜ୍ଞାନୁଷ୍ଠାନ ସମାହିତ ହୁଏ । ଏହି ଯଜ୍ଞର ପବିତ୍ର ଭସ୍ମ ପୁଣ୍ୟ ବୈତରଣୀ ନଦୀର ଦଶାଶ୍ୱମେଧ ଘାଟରେ ବିସର୍ଜିତ ହୋଇଥାଏ । ଏଥିପାଇଁ ଶଙ୍ଖଚିଲାର ଯଜ୍ଞସ୍ଥଳୀଠାରୁ ଏକ ବଡ଼ଧରଣର ଶୋଭାଯାତ୍ରା ମହାସମାରୋହରେ ବୈତରଣୀକୂଳକୁ ଆସିଥାଏ ।

**ଅଗ୍ନୀ ଅବଧୂତ ଲଙ୍ଗୁଳି ମଠ :-**

ଚଣ୍ଡୀଖୋଲ-ପାରାଦ୍ୱୀପ ପାଞ୍ଚ ନମ୍ବର(କ) ଜାତୀୟ ରାଜପଥର ବନ୍ଦରେଶ୍ୱର ଛକ ନିକଟରେ ରହିଛି ଲଙ୍ଗୁଳିମଠ । ଏହି ମହାନ ସନ୍ଥଙ୍କ ବାଲ୍ୟାବସ୍ଥାର ନାମ ଥିଲା ବଟକୃଷ୍ଣ । ବସନ୍ତ ରୋଗରେ ଆକ୍ରାନ୍ତ ହେବାରୁ ୭ ବର୍ଷ ବୟସ ବେଳକୁ ଦୃଷ୍ଟିଶକ୍ତି ହରାଇଥିଲେ । ସନ୍ୟାସ ପଥ ଗ୍ରହଣ କରି ସେ ଗୃହତ୍ୟାଗୀ ହେଲେ ଏବଂ ବିଭିନ୍ନ ସ୍ଥାନରେ ମଠସ୍ଥାପନା କରି ଶେଷରେ ସ୍ୱପ୍ନାବିଷ୍ଟ ହୋଇ ଅଳତି ବେଲବଣର ବଟବୃକ୍ଷ ମୂଳେ ରହିଥିଲେ । ସିଦ୍ଧିଲାଭ କରିବାପରେ ବଟର ନାମ ଅନନ୍ତବଟ ରଖିଥିଲେ । ବିକ୍ରମତିରଣ ଗ୍ରା.ପ.ସ୍ଥ ବନ୍ଦରେଶ୍ୱର ଲଣ୍ଡା ଓ ସୁଖଭା (ଶୁଖୁଆପଦ୍ମା) ପାହାଡ଼ ପାଦଦେଶରେ ଏକ ମନୋରମ ପ୍ରାକୃତିକ ପରିବେଶରେ ତାଙ୍କ ଦ୍ୱାରା ଆଶ୍ରମ ପ୍ରତିଷ୍ଠିତ ହୋଇଛି । ଏହାର ଅନତିଦୂରରେ (୧ କି.ମି.) ରହିଛି ମହାନ ସନ୍ଥ ଅରକ୍ଷିତ ଦାସଙ୍କ ସମାଧିପୀଠ ଓ ଓଳାଶୁଣୀ ଗୁମ୍ଫା ପାହାଡ଼ ।

ସନ୍ଥ ଲଙ୍ଗୁଳି ବାବା ଅଗ୍ନୀ ଅବଧୂତ ସଂପ୍ରଦାୟର ଥିଲେ । ଘୋର ଶୀତ, ବର୍ଷା, ଓ ଗ୍ରୀଷ୍ମକାଳରେ ଲଙ୍ଗଳା ରହି ବୃକ୍ଷ ମୂଳରେ ଦିବାନିଶି ବସି ଅନାଦିଙ୍କ ପାଦରେ ଲୟ ରଖିବା ସହିତ ସେ ଶରୀରରେ ବିଷ୍ଠା ବୋଳି ହେବା ସହ ଓ ପରିସ୍ରାପାନ କରୁଥିଲେ । ସବୁଜାତିର ଭକ୍ତଙ୍କଠାରୁ ଖାଦ୍ୟ ଗ୍ରହଣ କରୁଥିଲେ । ଅମଠପୁରର ତତ୍କାଳୀନ ଜମିଦାର ଆନନ୍ଦ ଦାସ ଏହି ଆଶ୍ରମରେ ଏକ ଦେଉଳ ପ୍ରତିଷ୍ଠା କରିଥିଲେ । ୧୯୩୨ ମସିହାରେ ଏହି ଯୋଗଜନ୍ମା ମହାନ ସନ୍ଥଙ୍କ ମହାପ୍ରୟାଣ ଘଟିଥିଲା । ଆଶ୍ରମର ଦେଉଳ ଭିତରେ ୨୧ ଦିନ ସଂପୂର୍ଣ୍ଣ ମୌନବ୍ରତ ରଖିବାପରେ ସେ ପରମାତ୍ମାଙ୍କ ସହ ମିଳିତ ହୋଇଥିଲେ । ତାଙ୍କର ପ୍ରଧାନ ଓ ପ୍ରଥମ ଶିଷ୍ୟ ଥିଲେ ଶ୍ୟାମ ଦାସ । ଏବେ ମଠର ମହନ୍ତଭାବେ ଶ୍ରୀ ପର୍ଶୁରାମ ଦାସ ଓ ଅନ୍ୟ କେତେକ ସାଧୁ ଅବସ୍ଥାନ କରୁଛନ୍ତି । ମଠସଂଲଗ୍ନ ପରିସରରେ କେତେକ ବୌଦ୍ଧକୀର୍ତ୍ତି ମଧ ଆବିଷ୍କୃତ ହୋଇଛି । ଯେ କୌଣସି ଦର୍ଶକ ଓ ପର୍ଯ୍ୟଟକଙ୍କ ପାଇଁ ଏହା ତୀର୍ଥ ଓ ଦର୍ଶନୀୟ ମଠ ।



Digitized by PPRACHIN, SOA

## ଅମରାବତୀ କଟକ :-

ଛତିଆ ନିକଟସ୍ଥ ଐତିହାସିକ ଅମରାବତୀ କଟକ ଏକ ପ୍ରାଚୀନତମ ଦୁର୍ଗର ଭଗ୍ନାବଶେଷ ଭାବେ ଦଣ୍ଡାୟମାନ । ଗଙ୍ଗସାମ୍ରାଜ୍ୟର ଅଧିପତି ଚୋଡ଼ଗଙ୍ଗ ଦେବଙ୍କ ସମୟରେ ଯବନ ଆକ୍ରମଣରୁ ରକ୍ଷା କରିବା ଲାଗି ଏହି ଦୁର୍ଗ ନଗର ବା କଟକ ନିର୍ମିତ ହୋଇଥିବା ଅନୁମେୟ । ଏଠାରେ ଅମରେଶ୍ୱର ଶୈବମନ୍ଦିର, ଜଗନ୍ନାଥ ବିଗ୍ରହ ସମେତ ଶିବ, ଦୁର୍ଗା, ବ୍ରହ୍ମା, ସରସ୍ୱତୀ ଓ ଇନ୍ଦ୍ରଙ୍କ ମୂର୍ତ୍ତି ଏବଂ ବୌଦ୍ଧକୀର୍ତ୍ତିରାଜିର ସଂକେତ ରହିଛି । ପୁରାଣ ବର୍ଣ୍ଣିତ ପଞ୍ଚକଟକ ମଧ୍ୟରୁ ଏହା ଅନ୍ୟତମ । ଅଚ୍ୟୁତାନନ୍ଦ ଦାସଙ୍କ ବ୍ରହ୍ମକଳ୍ପରେ ଅମରାବତୀ ପୀଠର ବର୍ଣ୍ଣନା 'ଅମର ଭୂମି' ନାମରେ ନାମିତ ।

## ନାଭିଗୟା ଓ ପୁଣ୍ୟ ଦଶାଶ୍ୱମେଧ ଘାଟ :-

ଯାଜପୁର ସହର ଉପକଣ୍ଠସ୍ଥ ପାବନୀ ବୈତରଣୀ ନଦୀକୂଳରେ ଅବସ୍ଥିତ ନାଭିଗୟା ପୀଠ ଓ ପବିତ୍ର ଦଶାଶ୍ୱମେଧ ଘାଟ । ଏହି ନାଭିଗୟାରେ ପିଣ୍ଡଦାନ କରି ଘାଟରେ ସ୍ନାନକଲେ ଜନ୍ମଜନ୍ମାନ୍ତରର ପାପ ନାଶନ ହୋଇଥାଏ । ପିତୃପୁରୁଷଗଣ ଏଠାରୁ ପିଣ୍ଡ ଗ୍ରହଣ କରି ମୋକ୍ଷଲାଭ କରିଥା'ନ୍ତି ବୋଲି ବିଶ୍ୱାସ ରହିଛି । ପ୍ରାଚୀନ ଉତ୍କଳର ନାଭିକ୍ଷେତ୍ରଭାବେ ପରିଚିତ ପ୍ରାଚୀନ ଯାଜନଗର ବା ଯଜ୍ଞପୁର ବା ଯାଜପୁରର ଆରାଧ୍ୟାଦେବୀ ବିମଳା ବିରଜାଙ୍କୁ ଦର୍ଶନ କଲେ ମହାପୁଣ୍ୟ ଅର୍ଜନ ହୋଇଥାଏ । ଏହି ବୈତରଣୀ ଉପକଣ୍ଠରେ ଏକ ପ୍ରାଚୀନ ଜଗନ୍ନାଥ ମନ୍ଦିର ରହିଛି । ଏଠାରୁ ମିଳିଥିବା ଅନେକ ପ୍ରାଚୀନ କୀର୍ତ୍ତିରାଜି ଓ ପାଷାଣ ବିଗ୍ରହକୁ କେନ୍ଦ୍ର ପ୍ରତ୍ନତତ୍ତ୍ୱ ସର୍ବେକ୍ଷଣ ସଂସ୍ଥା ପକ୍ଷରୁ ସୁରକ୍ଷିତ କୀର୍ତ୍ତି ଘୋଷିତ କରାଯାଇଛି ଏବଂ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ପୂଜାର୍ଚ୍ଚନା କରାଯାଉଛି ।

## ବରୁଣେଶ୍ୱର ମେଳା :-

ବିଂଝାରପୁର ଥାନା ଅନ୍ତର୍ଗତ ଅରେଇ ନିକଟସ୍ଥ ପ୍ରାଚୀନ ବରୁଣେଶ୍ୱର ପୀଠ ଠାରେ ମହାବିଷୁବ ପଣାସଂକ୍ରାନ୍ତି ଦିନ ବରୁଣେଶ୍ୱର ମେଳା ଅନୁଷ୍ଠିତ ହୋଇଥାଏ । ସପ୍ତାହ ବ୍ୟାପୀ ଏହି ପ୍ରସିଦ୍ଧ ମେଳାରେ ସହସ୍ରାଧିକ ଜନସମାଗମ ହୋଇଥାଏ ।

## ଉଦୟଗିରିର ବିସ୍ମୟ : ବଜ୍ରଯାନଯୁଗର ବିରଳ ବୌଦ୍ଧକୀର୍ତ୍ତି :-

ବଡ଼ଚଣା ବ୍ଲକ୍ ତଥା ବାଲିଚନ୍ଦ୍ରପୁର ଥାନା ଅନ୍ତର୍ଗତ ବିଶ୍ୱପ୍ରସିଦ୍ଧ ବୌଦ୍ଧପୀଠ ଉଦୟଗିରିରେ ସଦ୍ୟତମ ଉତ୍ଖନନ ଫଳରେ ବଜ୍ରଯାନଯୁଗର ଏକ ପ୍ରାଚୀନ ଦ୍ୱିତଳ ବୌଦ୍ଧ ବିହାର ଆବିଷ୍କୃତ ହୋଇଛି । ଏହା ପଞ୍ଚରଥ ଶୈଳୀରେ ନିର୍ମିତ ହେବା ଅନ୍ୟ ଏକ ବିଶେଷତ୍ୱ । ଭାରତୀୟ ପ୍ରତ୍ନତତ୍ତ୍ୱ ସଂରକ୍ଷଣ ବିଭାଗର ଉତ୍ଖନନ ଶାଖାପକ୍ଷରୁ ଖନନ ସମୟରେ ସନ୍ଧାନ ମିଳିଥିବା ଇଟା ନିର୍ମିତ ମହାବିହାର ନିର୍ମାଣ ଶୈଳୀ ଭାରତ ବର୍ଷରେ ଅଦ୍ୱିତୀୟ ଓ ବିରଳ ବୋଲି ପ୍ରତ୍ନତତ୍ତ୍ୱବିତ୍‌ମାନେ ମତ ଦିଅନ୍ତି । ଏଠାରୁ ପ୍ରାପ୍ତ ଧାରିଣୀମନ୍ତ୍ର ଖୋଦିତ ସିଲ୍ ମୋହରରେ ପ୍ରାଚୀନ ବ୍ରାହ୍ମୀଲିପିରେ "ୟେ ଧର୍ମା ହେତୁ ପ୍ରଭବ୍ୱା ହେତୁ ମଂ ତେଶାମଂ ତଥାଗତୋ..." ଲେଖାଥିବା ଦେଖିବାକୁ ମିଳିଛି । ଖ୍ରୀଷ୍ଟୀୟ ୮ମ-୯ମ ଶତାବ୍ଦୀରେ ଏହା ନିର୍ମିତ ହୋଇଥିଲା । ବିହାରର ମୁଖ୍ୟ ଗର୍ଭଗୃହ ଚତୁଃପାର୍ଶ୍ୱରୁ ୧.୪ ମିଟର ଚଉଡ଼ାର ଏକ ପ୍ରଦକ୍ଷିଣ ପଥ ଥିବା ସନ୍ଧାନ ମିଳିଛି । ଯାହାକି ସାଧାରଣ ଅନ୍ୟତ୍ର କେଉଁ ମହାବିହାରରେ ଦେଖିବାକୁ ମିଳି ନ ଥାଏ । ପ୍ରଥମ ମହଲା ଭଳି ଦ୍ୱିତୀୟ ମହଲାରେ ମଧ୍ୟ ଅନୁରୂପ ଗର୍ଭଗୃହ ରହିଥିବା ସଙ୍କେତ ମିଳିଛି ।



Digitized by PPRACHIN, SOA

୧୯୮୬ ମସିହାରେ ଉଦୟଗିରିରେ ପ୍ରଥମ ଆନୁଷ୍ଠାନିକ ଖନନ ବେଳେ 'ମାଧବପୁର ବୌଦ୍ଧ ମହାବିହାର' ଲୋକଲୋଚନକୁ ଆସିଥିଲା । ନୂତନ ଖନନ ସମୟରେ ବିହାରର ସୂଚନା ଦେଉଥିବା ସିଲ୍‌ମୋହର ମିଳି ନ ଥିଲେ ସୁଦ୍ଧା ୨ଟି ଖଣ୍ଡିତ ଶିଳା ଲେଖର ପାଠୋଦ୍ଧାର ପାଇଁ ଏ.ଏସ୍.ଆଇ. କର୍ତ୍ତୃପକ୍ଷ ଏହାକୁ ମହୀଶୂରସ୍ଥିତ ଏପି ଗ୍ରାଫି ବିଭାଗକୁ ପଠାଇଛନ୍ତି ।

ପ୍ରାଚୀନ ଉତ୍କଳର ଭୌମକର ବଂଶୀୟ ରାଜାମାନେ ବୌଦ୍ଧ ଧର୍ମାଶ୍ରିତ ଥିବାରୁ ବୌଦ୍ଧ ଶ୍ରମଣ (ଭିକ୍ଷୁ) ମାନଙ୍କ ପାଇଁ ବିଦ୍ୟା ଓ ସାଧାନାର କେନ୍ଦ୍ରଭାବେ ଏହି ବିହାର ନିର୍ମାଣ କରିଥିଲେ । ବିହାରରେ ଭିକ୍ଷୁ ତଥା ଧାର୍ମିକ ଜନତାଙ୍କ ଉପାସନା ଓ ଅର୍ଚ୍ଚନା ନିମନ୍ତେ ବୌଦ୍ଧସ୍ତମ୍ଭ, ଚୈତଗୃହସ୍ତୁପ ଗଢ଼ା ହୋଇଥିଲା ।

୧୮୬୯ ମସିହାରେ ଯାଜପୁରର ଏସ୍.ଡି.ଓ. ଶ୍ରୀ ସି. ଏସ୍. ବାନାର୍ଜୀ ଉଦୟଗିରି ବୁଲି ଦେଖିବା ପରେ ବଂଗଳାର ରୟାଲ ଏସିଆଟିକ୍ ସୋସାଇଟି ଜର୍ଣ୍ଣାଲରେ କେତେକ ଲେଖା ପ୍ରକାଶ କରିଥିଲେ । ଏହାପରେ କଟକର ଜିଲ୍ଲାପାଳ ଥିବା ଇଂରେଜ ସାହେବ ଜନ୍ ବୀମ୍‌ସ ମଧ ଉଦୟଗିରି ପରିଦର୍ଶନ କରିଥିଲେ । ଏବେ ନବାବିଷ୍କୃତ ହୋଇଥିବା ବିହାରର ମୁଖଦ୍ୱାରବନ୍ଧକୁ ଜନ୍ ବୀମ୍‌ସ କଟକ ରେଭେନ୍‌ସା କଲେଜ ନିକଟସ୍ଥ କୌଣସି ପୁରାତନ ମନ୍ଦିରକୁ ନେଇ ଆସିଥିଲେ । ପରେ ଏହାକୁ ପାଟଣା ସଂଗ୍ରହାଳୟକୁ ପଠାଇ ଦିଆଯାଇଥିଲା । ପୂର୍ବରୁ ବିଭିନ୍ନ ସମୟରେ ଉଦୟଗିରି ପରିଦର୍ଶନ କରିଥିବା ବିଶିଷ୍ଟ ଐତିହାସିକ ଓ ଗୋରାମାନେ ଏଠାରୁ ବହୁ ବିରଳ ବୌଦ୍ଧମୂର୍ତ୍ତି ଅନ୍ୟତ୍ର ନେଇ ଯାଇଛନ୍ତି । ସ୍ଥାନୀୟ କେତେକ ଜମିଦାର ଓ କେନ୍ଦ୍ରାପଡ଼ାର ତତ୍‌କାଳୀନ ଜମିଦାରଙ୍କ ପ୍ରାସାଦକୁ ମଧ ଉଦୟଗିରି ପଥରଖଣ୍ଡ ଓ ବୌଦ୍ଧମୂର୍ତ୍ତି ଚାଲାଣ ହୋଇଛି । ସେ ସବୁର ଏବେ ସନ୍ଧା ମିଳୁନାହିଁ । ନିକଟରେ ଥିବା ଲଳିତଗିରି ଓ ରତ୍ନଗିରି ବୌଦ୍ଧ-ବିହାରଠାରୁ ଉଦୟଗିରିର ଭାସ୍କର୍ଯ୍ୟ ଖୋଦିତ ଅଞ୍ଚଳର ପରିସୀମା ବ୍ୟାପକ ଓ ଅନନ୍ୟ ସାଧାରଣ । ଏବେ ୨ଟି ବିହାର ଆବିଷ୍କୃତ ହୋଇ ସାରିଥିଲେ ବି ମାଟିତଳେ ଆଉ ୪/୫ଟି ବୌଦ୍ଧବିହାର ରହିଥିବା ସୂଚନା ମିଳୁଛି । ଉଦୟଗିରିରେ ୨୩ ବର୍ଗ ଫୁଟ ଆୟତନର ଏକ ଅତିକାୟ ପ୍ରାଚୀନ ବିରଳ କୂପ ରହିଛି । ୩୦ଟି ପଥରକଟା ପାହାଚରେ ଓହ୍ଲାଇ ଏଠାରୁ ଜଳସଂଗହ କରାଯିବାର ବ୍ୟବସ୍ଥା ଏବେ ବି ରହିଛି । ପ୍ରାଚୀନ ବୌଦ୍ଧମହାକାଳ ସମୟ ସୂଅରେ ଏବେ ହିନ୍ଦୁଧର୍ମର ମହାକାଳ ମା' ନାମରେ ପୂଜା ପାଉଛନ୍ତି ।

ଏଠାରେ ଥିବା ଏକ ୮ ଫୁଟ ଉଚ୍ଚତା ବିଶିଷ୍ଟ ଜଟାମୁକୁଟ ଲୋକେଶ୍ୱରଙ୍କ ପୃଷ୍ଠ ଭାବରେ ଥିବା ଶିଳାଲେଖରେ ବର୍ଣ୍ଣିତ ହୋଇଛି ଯେ, ବଜ୍ରଯାନ ବୌଦ୍ଧ ଧର୍ମ ପ୍ରଚାର କରିଥିବା ସମ୍ରାଟ ଇନ୍ଦ୍ରଭୂତିଙ୍କ ପୁତ୍ର ତଥା ଦ୍ୱିତୀୟ ବୁଦ୍ଧଭାବେ ଖ୍ୟାତ ପଦ୍ମସମ୍ଭବଙ୍କ ପବିତ୍ର ଭସ୍ମାବଶେଷ (Relics) କୌଣସି ଭସ୍ମାଧାରରେ ଥିବା ସୂଚିତ ହୋଇଛି । ଏହି ଶିଳା ଲେଖରେ ମଧ ପଦ୍ମସମ୍ଭବଙ୍କୁ ସ୍ତୁତି କରାଯାଇଛି । କିନ୍ତୁ ଅବଧି କୌଣସି ଭସ୍ମାଧାର ଆବିଷ୍କୃତ ହୋଇନାହିଁ । ଅଷ୍ଟମ ଓ ନବମ ଶତାବ୍ଦୀରେ ମହାଯାନ ବୌଦ୍ଧଧର୍ମ, ସଂସ୍କୃତି ଓ ଇତିହାସର ଅନେକ ଲୁକ୍‌କାୟିତ ତଥ୍ୟ ଲୋକଲୋଚନକୁ ଆସିପାରିବ । ସ୍ଥାୟୀ ସଂଗ୍ରହାଳୟ ନ ଥିବାରୁ ଉଦୟଗିରିରୁ ଆବିଷ୍କୃତ ବହୁ ମନୋରମ ମୂର୍ତ୍ତି ଓ ସ୍ଥାପତ୍ୟ ରାଜ୍ୟ ସଂଗ୍ରହାଳୟ ଅଥବା ଏ.ଏସ୍. ଆଇ. ଗୋଦାମରେ ପଡ଼ି ରହିଛି । ଉପଯୁକ୍ତ ସଂରକ୍ଷଣ ଓ ସୁରକ୍ଷା ବ୍ୟବସ୍ଥା ସହିତ ମୂର୍ତ୍ତିଗୁଡ଼ିକ ଉଦୟଗିରିରେ ସ୍ଥାପନ କରାଯିବାକୁ



Digitized by PPRACHIN, SOA

ସାଧାରଣରେ ମତ ପ୍ରକାଶ ପାଉଛି । ଉଦୟଗିରି ପର୍ଯ୍ୟଟନ, ଗବେଷକ, ଐତିହାସିକ ଓ ଜନସାଧାରଣଙ୍କ ପାଇଁ ଏକ ପ୍ରମୁଖ ଆକର୍ଷଣୀୟ ପୀଠ ହୋଇପାରିଛି ।

## ସତ୍ୟପୀଠ (ଦରଗା ସାହା) :-

ଚଣ୍ଡୀଖୋଲ-ପାରାଦ୍ୱୀପ ଜାତୀୟ ରାଜପଥରେ ଗଲେ ବାଲିଚନ୍ଦ୍ରପୁର ନିକଟରେ ବାମଦିଗରେ ଏକ ପାହାଡ଼ ଶୀର୍ଷ ଦେଶରେ ବହୁ ଦୂରକୁ ଦେଖା ଯାଉଥିବା ଧଳା ଗମ୍ବୁଜାକୃତି ଦରଗା ହିଁ ହିନ୍ଦୁ ଓ ମୁସଲମାନ ସଂସ୍କୃତିର ମିଳନପୀଠ, ସତ୍ୟପୀରଙ୍କ ଆସ୍ଥାନ । ଚାରିନଙ୍ଗଳ ଗ୍ରା.ପ.ସ୍ଥ ବଅତିନ୍-ଆଲମଗିରି ପାହାଡ଼ ଶୀର୍ଷରେ ରହିଥିବା ଏହି ପୀଠ ଉଭୟ ସଂପ୍ରଦାୟ ମଧ୍ୟରେ ଭାଇଚାରା ଓ ସଂହତି ସ୍ଥାପନ କରିଛି । ପ୍ରତି ଗୁରୁବାର ଦିନ ଏଠାରେ ଜନସମାଗମ ହୋଇଥାଏ । ଐତିହାସିକଙ୍କ ମତରେ ଏହା ଖୁବ୍ ସମ୍ଭବତଃ କୌଣସି ପ୍ରାଚୀନ ବୌଦ୍ଧପୀଠ ସ୍ଥଳୀର ଧ୍ୱଂସାବଶେଷର ଜିନିଷରେ ନିର୍ମିତ । କାରଣ ଏହା ନିକଟରେ ଆଲମଗିରି ପାହାଡ଼ ଅପରପାର୍ଶ୍ୱରେ ଗଢ଼ି ଉଠିଥିଲା ବିଶ୍ୱପ୍ରସିଦ୍ଧ ବୌଦ୍ଧପୀଠ ଉଦୟଗିରି । ସତ୍ୟପୀରଙ୍କ ଏହି ମସ୍‌ଜିଦ୍ କାଛରେ ଏକ ଖୋଦିତ ପ୍ରସ୍ତର ଖଣ୍ଡରେ ଉଲ୍ଲିଖିତ ରହିଛି ଯେ ୧୭୧୯ ମସିହାରେ ଓଡ଼ିଶାର ଉପସୁବାଦାର ସୁଜାଉଦ୍ଦିନ ଫିରତାଭସ୍ ସହିତ ଦିପ୍ତିରେ ପ୍ରତିଦ୍ୱନ୍ଦିତା କରି ଏହାକୁ ନିର୍ମାଣ କରିଥିଲେ । ପାହାଡ଼ର ଶୀର୍ଷଭାଗକୁ ତାଖତ-ଇ ମୁସଲମାନ ବା ସୁଲେମାନଙ୍କ ରାଜଗାଦି ବୋଲି କୁହାଯାଏ । ଏକ ଜାଦୁ ଗାଲିଚାରେ ଶୂନ୍ୟରେ ଉଡ଼ିଯାଇ ପାରିବାର ଶକ୍ତି ସେ ରାଜାଙ୍କର ଥିଲା । ସେ ପ୍ରାର୍ଥନା କରିବା ପାଇଁ ସେହି ସ୍ଥାନକୁ ଯାଉଥିବା ପ୍ରବାଦ ରହିଛି । ଏହି ସତ୍ୟପୀରଙ୍କ ପୀଠର ଠିକ୍ ନିମ୍ନ ଭାଗରେ ଏକ ପ୍ରାଚୀନ ଲକ୍ଷ୍ମୀନାରାୟଣ ମନ୍ଦିର ରହିବା ମଧ୍ୟ ଅନ୍ୟ ଏକ ବିଶେଷତ୍ୱ । ପାହାଡ଼ ଶୀର୍ଷରେ ଥିବା ସତ୍ୟପୀରଙ୍କ ପୀଠକୁ ଯିବାପାଇଁ ପାବଛ ନିର୍ମାଣ ନିମନ୍ତେ ଗ୍ରାମବାସୀମାନେ ଦାବିକରି ଆସୁଛନ୍ତି ।

## ଷୋଳପୁଅ ମା' :-

ଉଦୟଗିରି ପାହାଡ଼ର ଦକ୍ଷିଣ ଦିଗରେ ଆଉ ଏକ ଅନିର୍ଦ୍ଦେଶିତ ଦେବତାଙ୍କ ଚର୍ତୁଦିଗରେ ତେରଗୋଟି ଛୋଟଛୋଟ ଦେବତା ଘେରି ରହିଥିବା ମୂର୍ତ୍ତିମାନ ରହିଛନ୍ତି । ସେହି ପ୍ରାଚୀନ ଦେବତାଙ୍କ ଡାହାଣ ଗୋଡ଼ ତଳକୁ ଝୁଲିରହିଛି । ଏହି ପ୍ରାଚୀନ କ୍ଷେତ୍ରକୁ ବର୍ତ୍ତମାନ **ଷୋଳପୁଅ ମା'** ଦେବୀଙ୍କ ଆସ୍ଥାନ ବୋଲି କହି ପୂଜା କରୁଛନ୍ତି । ସପ୍ତାହରେ ଦୁଇଦିନ ନିଃସନ୍ତାନ ଜନନୀମାନେ ପୁତ୍ରଲାଭ ଆଶାରେ ଷୋଳପୁଅ ମା' ଦେବୀଙ୍କ ପାଖକୁ ପୂଜାର୍ଚ୍ଚନା ପାଇଁ ଆସିଥା'ନ୍ତି ।

## ଗୋକର୍ଣ୍ଣେଶ୍ୱର :-

ଜାରକାଠାରୁ ପାଣିକୋଇଲି ରାସ୍ତାରେ ଗୋଟିଏ କି.ମି ଦୂର ବ୍ରାହ୍ମଣୀ ନଦୀ କୂଳରେ ଅବସ୍ଥିତ ଗୋକର୍ଣ୍ଣେଶ୍ୱର ମନ୍ଦିର ନିର୍ମାଣ ସମ୍ପର୍କରେ କୌଣସି ତଥ୍ୟ ମିଳି ନ ଥିଲେ ହେଁ ଏକ ପୌରାଣିକ କିମ୍ବଦନ୍ତୀ ଏହା ସମ୍ପର୍କରେ ରହିଛି । ମହାଭାରତ କଥା, କପଟ ପଶା ଖେଳରେ ପରାସ୍ତ ହୋଇ ପାଣ୍ଡବ ପାଞ୍ଚ ଭାଇ ବାରବର୍ଷ ବନବାସ ଗଲେ । ତା ପରେ ଗୋଟିଏ ବର୍ଷ ଅଜ୍ଞାତ ବାସ । ସେତେବେଳେ ପଞ୍ଚୁପାଣ୍ଡବଙ୍କ ପିତୃ ପୁରୁଷଙ୍କ ଶାଂଦ୍ଧ ପଡିବାରୁ ତିଳ ତର୍ପଣ କରିବାକୁ ସେମାନେ ଏହି ବ୍ରାହ୍ମଣୀ ନଦୀ କୂଳରେ ରହିଲେ ।



Digitized by PPRACHIN, SOA

ସେହି ସମୟରେ କ୍ଷେତ୍ରିୟମାନଙ୍କ ପିତୃ ଶ୍ରାଦ୍ଧ ପାଇଁ ଗଣ୍ଡାମାଂସର ଦରକାର ପଡୁଥିଲା ।

ସେ ସମୟରେ ଜଙ୍ଗଲମାନଙ୍କରେ ନୀଳଗାଈ ରହୁଥିଲେ । ଅର୍ଜୁନ ଗଣ୍ଡା ମାରିବାକୁ ଜଙ୍ଗଲକୁ ଗଲେ । ଦୂରରୁ ନୀଳ ଗାଈଟିଏ ଦେଖି ଗଣ୍ଡାଟିଏ ଭାବି ସଙ୍ଗେ ସଙ୍ଗେ ଶର ବିନ୍ଧିଲେ । ନୀଳ ଗାଈଟି ସେଇଠି ଟଳି ପଡିଲା । ଅର୍ଜୁନ ଯାଇ ଦେଖନ୍ତି ତ ସେ ଗଣ୍ଡା ନୁହେଁ ନୀଳ ଗାଈଟିଏ । ଅର୍ଜୁନଙ୍କୁ ଗୋ ହତ୍ୟା ପାପ ଲାଗିଲା । ସେ ଶିବଙ୍କୁ ଆରାଧନା କଲେ ।

ନୀଳ ଗାଈର କାନ ଦୁଇଟି ଯେଉଁ ସ୍ଥାନରେ ପଡ଼ିଥଲା, ଶିବ ସେହିଠାରେ ଆବିର୍ଭାବ ହେଲେ । ଅର୍ଜୁନଙ୍କ ଅନୁରୋଧରେ ଶିବ ନୀଳ ଗାଈକୁ ପୁର୍ନଜନ୍ମ ଦେଲେ ଓ ଗାଈଙ୍କ ପାଖରେ ଶିବ ଠିଆ ହୋଇ ରହିଲେ । ସେହି ସ୍ଥାନର ନାମ ହେଲା ଗୋକର୍ଣ୍ଣେଶ୍ୱର । ଏହି ସ୍ଥାନଟି ମଧୁପୁର ରାଜାଙ୍କ ଅଧିନରେ ଥିଲା । ରାଜା ସେଠାରେ ଏକ ମନ୍ଦିର ତିଆରି କରାଇଥିଲେ । ବିଦେଶୀ ଆକ୍ରମଣକାରୀମାନେ ସେହି ମନ୍ଦିରକୁ ଭାଙ୍ଗିଦେଇଥିଲେ । ରାଜା ସ୍ୱର୍ଗତ ସୁଦର୍ଶନ ଧିର ନରେନ୍ଦ୍ର ଏହା ପୁନଃ ନିର୍ମାଣ କରାଇଥିଲେ । ଏହି ମନ୍ଦିରକୁ ଲାଗି ପାହାଡଟିଏ ପୂର୍ବ ରାଜାମାନଙ୍କର ଗଡ ଥିଲା । ଏବେ ସେଠାରେ ପାଛଶାଳା ତିଆରି ହୋଇଛି । ଗୋ କର୍ଣ୍ଣିକା ନାମରେ ଏକ ମାସିକ ପତ୍ରିକା ମଧ ପ୍ରକାଶ ପାଉଛି ।



## ସିଂହାପୁରର ଜଳଶାୟୀ ନାରାୟଣ :-

ଧର୍ମଶାଳା ଥାନା ବ୍ରାହ୍ମଣୀ ନଦୀ ପାର୍ଶ୍ୱରେ ସିଂହାପୁର ଗ୍ରାମ ଅବସ୍ଥିତ । ଇତିହାସର ସର୍ବେକ୍ଷଣରୁ ଜଣାଯାଏ ଯେ ସମଗ୍ର ଗ୍ରାମଟି ବୌଦ୍ଧ ବିହାର ସ୍ତୁପ ତଥା ଅନ୍ୟାନ୍ୟ ବୌଦ୍ଧ କିର୍ତ୍ତିର ଭଗ୍ନାବଶେଷରେ ପରିପୂର୍ଣ୍ଣ । ବୌଦ୍ଧ ଧର୍ମର ସଂଘ ସ୍ମୃତିକୁ ସାକାର କରି ସଂଘପୁର ବା ସିଂହାପୁର ଗ୍ରାମ ହୋଇଥିବାର ଅନୁମାନ କରାଯାଏ । ଏଠାରେ ଚାରି ଛଅଟି ଅତିବ କମନୀୟ କଳା ମୁଗୁନୀ ପଥରରେ ନିର୍ମିତ ନାରାୟଣ ମୂର୍ତ୍ତିର ଉପାସନା ଅତିବ ତାତ୍ପର୍ଯ୍ୟ ପୂର୍ଣ୍ଣ । ସଙ୍ଖ, ଚକ୍ର, ଗଦା ଓ ପଦ୍ମ ଧାରଣ କରିଥିବା ନାରାୟଣ ଗୋସାଇଁ ବର୍ଷତମମ ଜଳର ଅତଳ ଗର୍ଭରେ ସ୍ଥାନିତ ଅଟନ୍ତି । ବିଷୁବ ସଂକ୍ରାନ୍ତିରେ ତିନିଦିନ ପାଇଁ ଠାକୁର ଦେଖାଯାଇଥାନ୍ତି ।



କିମ୍ବଦନ୍ତୀ ଅନୁଯାୟୀ କଳାପାହାଡର ଆକ୍ରମଣ ଭୟରେ ସ୍ୱୟଂ ନାରାୟଣ ଜଳରେ ଅତ୍ମଗୋପନ କରିଥିବା ଉପାଖ୍ୟାନ ରହିଛି । କିନ୍ତୁ ସ୍ୱୟଂ ନାରାୟଣ କଳାପାହାଡକୁ ଡରି ଲୁଚିବା ଏକ କାଳ୍ପନିକ ଉଦ୍ଭଟ ଚିନ୍ତାଧାରା ପରି ମନେହୁଏ । ଐତିହାସିକମାନେ ମତବ୍ୟକ୍ତ କରିଛନ୍ତି ଯେ ଏହି ମୁଗୁନୀ



Digitized by PPRACHIN, SOA



ପଥରରେ ନିର୍ମିତ ମୂର୍ତ୍ତିଟି ଖ୍ରୀଷ୍ଟିୟ ୧୧୦୦ ରୁ ୧୨୦୦ ମଧ୍ୟରେ, ଯେତେବେଳେ ବୌଦ୍ଧ ଧର୍ମ ଓ ବୈଷ୍ଣବ ଧର୍ମ ପ୍ରସାର ଲାଭ କରିଥିଲା । ଫଳରେ ବୌଦ୍ଧ ଓ ବୈଷ୍ଣବ ଧର୍ମାବଲମ୍ବିମାନଙ୍କ ମଧ୍ୟରେ ତର୍କ ଯୁଦ୍ଧ ଲାଗି ରହିଲା, ଜୟଦେବଙ୍କ ଗୀତଗୋବିନ୍ଦ ବୈଷ୍ଣବ ସଂସ୍କୃତିର ପ୍ରସାରରେ ଯାଜପୁର, ବାଲେଶ୍ୱର, ଖୀରଚୋରା ଗୋପୀନାଥ, ଧର୍ମଶାଳାର ସିଂହାପୁର, ପୁରୀରେ ବିଶେଷ ପ୍ରସାର ଲାଭ କରିଥିଲେ ହେଁ ବୈଷ୍ଣବ ସାଧକ ଗଣ ବୌଦ୍ଧ ଧର୍ମ କବଳରୁ ରକ୍ଷା ପାଇବା ପାଇଁ ବାଧ୍ୟ ହୋଇ ସିଂହାପୁରର ଗୋପିନାଥଙ୍କୁ ଏକ ପୋଖରୀରେ ଲୁଚାଇ ରଖିବା କଥା ସ୍ପଷ୍ଟ ପ୍ରମାଣିତ ହୁଏ । କିନ୍ତୁ ଦ୍ୱାଦଶ ଶତାବ୍ଦିରେ କବି ଜୟଦେବ ବୁଦ୍ଧଙ୍କୁ ନାରାୟଣଙ୍କ ନବମ ଅବତାର ଭାବେ ବର୍ଣ୍ଣନା କରିବା ପରେ ବୁଦ୍ଧ ଓ ବୈଷ୍ଣବ ଧର୍ମର ସମନ୍ୱୟ ଘଟିଥିଲା । ଏହାର ପ୍ରମାଣ ହିଁ ସିଂହାପୁରର ଗୋପୀନାଥ ଯାହାକୁ ଉଭୟ ବୌଦ୍ଧ ଓ ବୈଷ୍ଣବମାନେ ନାରୟଣ ଓ ବୁଦ୍ଧବୋଲି ଅବିହିତ କରିଥାନ୍ତି ।

**ଶ୍ୟାମସୁନ୍ଦର :-**

ଯାଜପୁର ଜିଲ୍ଲା ଧର୍ମଶାଳା ଅନ୍ତର୍ଗତ ଔରଙ୍ଗାବାଦ ଗାଁରେ ଶ୍ୟାମସୁନ୍ଦର ଅବସ୍ଥିତ । ଏଠାରେ ଶ୍ରୀ ଜଗନ୍ନାଥଙ୍କୁ ପୂଜା କରାଯାଏ । ମନ୍ଦିର ନିର୍ମାଣ ସମ୍ପର୍କରେ କୌଣସି ଏକ ପ୍ରାମାଣିକ ତଥ୍ୟ ମିଳେ ନାହିଁ । ତେବେ ମନ୍ଦିରର ଚିତ୍ର କଳାରୁ ଜଣାଯାଏ ଯେ ଏହା ଦୀର୍ଘ ୩୦୦ ବର୍ଷ ତଳର ମନ୍ଦିର ଅଟେ । ଲୋକ ମୁଖରୁ ଶୁଣାଯାଏ ଯେ କାନ୍ୟକୁବ୍ଜରୁ ଜଣେ ବ୍ରାହ୍ମଣ ଏହି ମଦନମୋହନ ମୂର୍ତ୍ତି ନେଇ ତୀର୍ଥ ଭ୍ରମଣରେ ଆସି ଏଠାରେ ଅବସ୍ଥାନ କରିଥିଲେ । ସେହି ଗ୍ରାମର ସୁନ୍ଦର ରାୟ ମହାପାତ୍ର ଓ ପଟ୍ଟନାୟକଙ୍କ ବଂଶଧରଙ୍କ ସାହାଯ୍ୟରେ ଏହି ମୂର୍ତ୍ତି ସେଠାରେ ସ୍ଥାପନ କରାଯାଇଥିଲା । ସର୍ପଦଂଶନ ଓ ବିଭିନ୍ନ ରୋଗ ବ୍ୟାଧିରୁ ମୁକ୍ତି, ଅତୀତ ସମ୍ପତ୍ତି ଉଦ୍ଧାର, ଅପୁତ୍ରିକ ପୁତ୍ରବତୀ ହେବାର ବହୁ ମହିମା ତାଙ୍କ ପୂଜା ଅର୍ଚ୍ଚନା ଯୋଗୁ ସମ୍ଭବ ହୋଇଥାଏ ବୋଲି ଏଯାବତ୍ ଜନସ୍ମୃତିରୁ ଜଣାଯାଏ ।

**ଜାଡୁଆ :-**

ମଙ୍ଗଳପୁରଠାରୁ କିଛି ଦୂର ଗଲେ ପଡେ ଶୋଳ ପାଟ ଗ୍ରାମ । ଶୋଳପାଟ ଓ ଦରପୁର ମଧ୍ୟବର୍ତ୍ତି ଏକ ବିରାଟ ସ୍ଥାନରେ ଜାଡୁଆ ମନ୍ଦିର ଅବସ୍ଥିତ । କଥିତ ଅଛି ଯେ ଦଳେ ଧିବର ଜାଡୁଆ ନିକଟସ୍ଥ ଏକ କେନାଲରେ ମାଛ ଧରିବା ପାଇଁ ଜାଲ ପକାଇବା ବେଳେ କେନାଲରୁ ଜାଲରେ ଏହି ମୂର୍ତ୍ତିଟି ପାଇଥିଲେ । ଜାଡୁଆଠାରୁ ଏହାକୁ ପାଇଥିବାରୁ ଏହି ଠାକୁରାଣୀଙ୍କ ନାମ ଜାଡୁଆ ଠାକୁରାଣୀ । ଜାଡୁଆ ଠାକୁରାଣୀଙ୍କୁ ଅର୍ଚ୍ଚନା କଲେ ପାଟିଫିଟୁ ନ ଥିବା ଲୋକ ମୁଢ଼ି, କଞ୍ଚାଲଙ୍କା ଭୋଗ ଲଗାଇଲେ ପାଟିଫିଟିଥାଏ ବୋଲି ଜନସ୍ମୃତି ରହିଛି । ଜାଡୁଆ ଠାକୁରାଣୀ ପୂର୍ବ ଯାଜପୁର ଅଞ୍ଚଳରେ ଚାଷୀ କୂଳର ପ୍ରାଣର ଦେବତା । ତାଙ୍କ ଅଶିର୍ବାଦରେ ଚାଷକାର୍ଯ୍ୟ ଓ ଧିବରମାନଙ୍କର ପ୍ରତ୍ୟକ୍ଷ ଦେବତା ।



Digitized by PPRACHIN, SOA

**ସନ୍ତମାଧବ :-**

ଯାଜପୁର ସହରରେ ଏହି ସନ୍ତ ମାଧବ ମନ୍ଦିର ଅବସ୍ଥିତ । ସନ୍ତମାଧବ ମନ୍ଦିର ବୋଲି ଯାହାକୁ କୁହାଯାଉଛି ସେଥିରୁ ଦୁଇଟି ଛୋଟ ଶିବଲିଙ୍ଗ ପୂଜା ପାଉଛନ୍ତି । ଏହା ବ୍ୟତୀତ ଏହି ମନ୍ଦିରରେ ବିଭିନ୍ନ ଦେବୀ ମୂର୍ତ୍ତି ରହିଛି । ଗଣେଶଙ୍କର ମଧ ସୁନ୍ଦର ମୂର୍ତ୍ତି ରହିଛି । ଭଗବାନ ବୁଦ୍ଧ ମନ୍ଦିର ବାହାରେ ରହି ପୂଜା ପାଉଛନ୍ତି । ସନ୍ତମାଧବ ମନ୍ଦିରର ଇତିହାସ ପୌରାଣିକ କିମ୍ବଦନ୍ତି ହୋଇ ରହିଛି ।

**ଛତିଆବଟ ଓ ହାଡ଼ିଦାସ :-**

ଛତିଆବଟ ହେଉଛି ମହାପୁରଷ ହାଡ଼ିଦାସଙ୍କ ସାଧନା ପୀଠ ଓ ସାମାଧି ପୀଠ । କବିଙ୍କ ବର୍ଣ୍ଣିତ ବିବରଣୀରୁ ଜଣାଯାଏ  ଯେ ହାଡ଼ିଦାସ ନିତ୍ୟାନ୍ତ ଗରିବ ଥିଲେ ଏପରିକି ଦୁଇ ଓଳି ଖାଇବାକୁ ପାଉ ନ ଥିଲେ । ପ୍ରାକ୍ ବ୍ରିଟିଶ୍ ଶାସନକାଳରେ ଲୁଣ ଉପରେ ଯେଉଁ କଟକଣା ଯାରି କାରାଯାଇଥିଲା ସେଥିରେ ସେ ପଖାଳ ସାଙ୍ଗକୁ ଲୁଣ ଟିକିଏ ପାଉ ନ ଥିଲେ । ହାଡ଼ିଦାସଙ୍କ ଶୂନ୍ୟକଳ୍ପ ଗୀତାର ବର୍ଣ୍ଣନା ଅନୁଯାୟୀ ଜଣାଯାଏ ଯେ ସେ ସମୟରେ ଦର୍ପଣୀରେ ଗୁଲଜାର ହୁସେନ୍ ରାଜତ୍ୱ କରୁଥିଲେ । ତାଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ଆକବର ହୁସେନ ଦର୍ପଣୀ ଗଡର ସିଂହାସନ ଆରୋହଣ କଲେ । ସେ ସମୟରେ ହାଡ଼ିଦାସଙ୍କୁ ପଚାଶ ବର୍ଷ ବୟସ ହୋଇଥିଲା । ବ୍ରାହ୍ମଣମାନେ ହାଡ଼ିଦାସଙ୍କ ବିରୁଦ୍ଧରେ ରାଜାଙ୍କ ପାଖରେ ଅଭିଯୋଗ କରିଥିଲେ ।

ହାଡ଼ିଦାସଙ୍କ ପ୍ରକୃତ ଘର ଛତିଆଠାରୁ ଅଳ୍ପ ଦୂର ଚମ୍ପାପୁର ଗ୍ରାମରେ । ତାଙ୍କ ପିତାଙ୍କ ନାମ ଚେମେଇ ଓଝା, ମାତାଙ୍କ ନାମ ଦେବକୀ । ସେ ଜାତିରେ କମାର ଓ ତାଙ୍କର ପୂର୍ବ ପୁରୁଷମାନେ ଶାଳ କାମକରି ଜୀବୀକା ଅର୍ଜ୍ଜନ କରୁଥିଲେ । ଶାଳ କାମ ସେଠାରେ ଭଲ ନ ଚାଲିବାରୁ ସେ ଚମ୍ପାପୁରରୁ ଛତିଆକୁ ଉଠିଆସିଥିଲେ । ସେ ବୈଷ୍ଣବ ଧର୍ମ ଗ୍ରହଣ କରି ଦିକ୍ଷା ଗ୍ରହଣ କରିଥିଲେ । ତେଣୁ ତାଙ୍କ ସଞ୍ଜା ବଦଳାଇ ସେ ଦାସ ସଞ୍ଜା ଗ୍ରହଣ କରିଥିଲେ, ତେଣୁ ହାଡ଼ିଦାସ ବୋଲି ତାଙ୍କୁ କୁହାଯାଏ । ହାଡ଼ିଦାସ ପୁରୀରେ ଅବସ୍ଥାନ କରୁଥିବା ସମୟରେ ମସ୍ତରାମ ଦାସ ନାମରେ ଜଣେ ପଶ୍ଚିମା ସାଧୁ ତାଙ୍କୁ ହାଡ଼ିଦାସ ନାମରେ ନାମିତ କରିଥିଲେ । ବର୍ତ୍ତମାନ ଯେଉଁଠି ଛତିଆ ବଟ ଅବସ୍ଥିତ ସେତେବେଳେ ସେ ସ୍ଥାନଟି ଝଟାଇଟାରେ ପରିପୂର୍ଣ୍ଣ ଥିଲା । ସେଠାରେ ଥିବା ଏକ ବଡ ବରଗଛ ମୂଳେ ବସି ହାଡ଼ିଦାସ ଭଗବଦ୍ ଚିନ୍ତାରେ ମଗ୍ନ ରହୁଥିଲେ । ଏହି ଘଟଣା ଦେଖି ଲୋକେ ହାଡ଼ିଦାସଙ୍କୁ ପାଗଳ ବୋଲି କହୁଥିଲେ । ବ୍ରହ୍ମ ଧର୍ମ ଓ ଜାତିଭେଦ ପ୍ରଥା ବିଲୋପରେ ସେ ବିଶ୍ୱାସ କରୁଥିବାରୁ ଏହା ବିରୁଦ୍ଧରେ ବହୁ ବ୍ରାହ୍ମଣ, ଯବନ ରାଜା ଗୁଲଜାର ହୁସେନ୍‌ଙ୍କ ନିକଟରେ ହାଡ଼ିଦାସଙ୍କ ବିରୁଦ୍ଧରେ ଅଭିଯୋଗ କଲେ । ବ୍ରାହ୍ମଣମାନଙ୍କ ଅଭିଯୋଗରେ ରାଜା ଦର୍ପଣ ଗଡକୁ ହାଡ଼ିଦାସଙ୍କୁ ଡକାଇ ପଠାଇଲେ । ହାଡ଼ିଦାସ ରାଜାଙ୍କ ଡକରା ପାଇ ହାତରେ କାଠ ସରାଟିଏ ଧରି ରାଜବାଟିରେ ପହଞ୍ଚିଲେ ।



Digitized by PPRACHIN, SOA

ବ୍ରାହ୍ମଣଙ୍କ ଅଭିଯୋଗ ସମ୍ପର୍କରେ ରାଜା ହାଡିଦାସଙ୍କୁ ପଚାରିବାରୁ ଜଗନ୍ନାଥଙ୍କ କୈବଲ୍ୟରେ ଜାତିଭେଦ ନାହିଁ ବୋଲି ସେ କହିଲେ । କିନ୍ତୁ ରାଜା କହିଲେ ଯେ ତମେ କ'ଣ ସବୁବେଳେ କୈବଲ୍ୟ ଖାଉଛ ଯେ ଧର୍ମ କଥା କହୁଛ । ତହୁଁ ହାଡ଼ିଦାସ ସେ କାଠ ଶରାରୁ କୈବଲ୍ୟ ବାହାର କରି ସମସ୍ତଙ୍କୁ ଖାଇବାକୁ ଦେଲେ । ହାଡ଼ିଦାସଙ୍କ ଏପରି ଅଲୌକିକ ସାହାସ ଦେଖି ରାଜା ଆଚମ୍ୱିତ ହୋଇ ତାଙ୍କୁ କିଛି ଉପାହାର ଦେବାକୁ ଚାହିଁଲେ । ହାଡିଦାସ କହିଲେ ମୋର ଧନ ଜନ କିଛି ଲୋଡ଼ା ନାହିଁ, କେବଳ ଯେଉଁ ବଟ (ବାରଗଛ) ତଳେ ବସୁଛି ସେତକ କେବଳ ଦିଅନ୍ତୁ । ରାଜା ତତ୍‌କ୍ଷଣାତ୍ ସେହି ବଟର ଆଖପାଖ ଅଞ୍ଚଳଟି ହାଡିଦାସଙ୍କୁ ଦାନ କଲେ । ହାଡିଦାସ ସେହି ବଟଗଛ ତଳେ ବସି ନିଜର ଦିବ୍ୟଜ୍ଞାନ ଫଳରେ ଯାହାଦେଖୁଥିଲେ ତାହା ଲେଖୁଥିଲେ । ହାଡିଦାସ ପଢ଼ି ଲେଖିଜାଣି ନ ଥିଲେ । ନୀଳାଦ୍ରି ନନ୍ଦ ତାଳପତ୍ର ଓ ଲେଖନୀ ଆଣି ହାଡିଦାସଙ୍କ ମୁଖ ନିସୃତ ବାଣୀକୁ ଲେଖିଯାଇଛନ୍ତି । ହାଡିଦାସଙ୍କ ମାଳିକାରେ ଯାହା ଲେଖାଯାଇଛି ଏବେ ତାହା ସବୁ ସତ୍ୟରେ ପରିଣତ ହେଉଛି । ହାଡିଦାସଙ୍କ ମୃତ୍ୟୁ ପରେ ଯେଉଁଠାରେ ତାଙ୍କୁ ସମାଧି ଦିଆଯାଇଛି, ତା ଉପରେ ନିର୍ମିତ ମନ୍ଦିର ହେଉଛି ଛତିଆ ବଟ । ସମାଧି ଉପରେ ବଳଭଦ୍ରଙ୍କ ମୂର୍ତ୍ତି ସ୍ଥାପନ କରାଯାଇଛି ।

ଛତିଆ ବଟ ମହାପୁରଷ ହାଡିଦାସଙ୍କ ସାଧନା ଓ ସମାଧି ସ୍ଥଳ ଅଟେ । ସେଠାରେ ମଧ ଜଗନ୍ନାଥ, ବଳଭଦ୍ର ଓ ଶୁଭଦ୍ରା ପୂଜା ପାଉଛନ୍ତି । କଳିଯୁଗରେ ଜଗନ୍ନାଥ ପୁରୁଷୋତ୍ତମ ଧାମ ଛାଡି ଏଠାକୁ ଆସିବାର ଭବିଷ୍ୟତ ବାଣୀ ରହିଥିବା ଜଣାଯାଏ ।

**ଅଶୋକ ଝର :-**

ସୁକିନ୍ଦାଠାରେ ଅଶୋକ ଝର ଅବସ୍ଥିତ । ଏହାର ଐତିହାସକ ଓ ପୌରାଣିକ କିମ୍ୱଦନ୍ତି ରହିଛି । ଏହାକୁ ଏକ ପର୍ଯ୍ୟଟନସ୍ଥଳ ରୂପେ ବ୍ୟବହାର କରାଯାଇ ପାରନ୍ତା ।

**ତେଲିଗଡ :-**

ବଡଚଣା ବ୍ଲକ ନିକଟରୁ କିଛିବାଟ ଗଲେ ତେଲିଗଡ ପଡିଥାଏ । ଏଠାରେ ତତ୍‌କାଳିନ ତେଲିଗଡ ରାଜାଙ୍କର ରାଜପ୍ରାସାଦର ଭଗ୍ନାବଶେଷ ଦେଖିବାକୁ ମିଳିଥାଏ । ଏହାର ସମ୍ମୁଖ ଭାଗରେ ଏକ ବିରଟ ପୋଖରୀ ବିଦ୍ୟମାନ । ରାଣୀଙ୍କର ଚିତ୍ତବିନୋଦନ ନିମନ୍ତେ ଏହା ନିର୍ମାଣ କରାଯାଇଥିଲା । ଏହା ରାଣୀ ପୋଖରୀ ନାମରେ ନାମିତ । ଏଠାକୁ ଥରେ ବୁଲି ଆସିଲେ ଅପୂର୍ବ ଆନନ୍ଦ ମିଳିଥାଏ ।

❑ ❑ ❑

ସୌଜନ୍ୟ

**ଶୁଭେନ୍ଦୁ ଭୂୟାଁ**

ସହ-ସମ୍ପାଦକ, ପ୍ରଜାତନ୍ତ୍ର



Digitized by PPRACHIN, SOA



ଯାଜପୁରର ସିଦ୍ଧେଶ୍ୱର ମନ୍ଦିର



ପଞ୍ଚରଥ ଶୈଳୀରେ ନିର୍ମିତ ପ୍ରସିଦ୍ଧ
ମହାବିନାୟକ ମନ୍ଦିର



ଯାଜପରର ଜଗନ୍ନାଥ ମନ୍ଦିର



Digitized by PPRACHIN, SOA



ବୈତରଣୀ ନଦୀ କୂଳରେ ଅବସ୍ଥିତ ଦଶାଶ୍ୱମେଧ ଘାଟ



ତ୍ରିଲୋଚନେଶ୍ୱର ମନ୍ଦିର



ଯାଜପୁରର ବରାହ ମନ୍ଦିର



Digitized by PPRACHIN, SOA

# ପଞ୍ଚକ୍ଷେତ୍ରରୁ ଗୋଟିଏ : ମହାବିନାୟକ

✤ ମହେଶ୍ୱର ବଳ

**ପୁରାଣ ବର୍ଣ୍ଣିତ ପଞ୍ଚକ୍ଷେତ୍ର ମଧ୍ୟରେ ସିଦ୍ଧ ବା ଗଣେଶ କ୍ଷେତ୍ର ମହାବିନାୟକ ଅନ୍ୟତମ । ଏଠାରେ ପଞ୍ଚ ଦେବାଦେବୀଙ୍କର ଆବିର୍ଭାବ ଘଟିଛି । ଗଣେଶ, ଭାସ୍କର, ବିଷ୍ଣୁ, ଶିବ, ଦୁର୍ଗା, ଗୋଟିଏ ପୀଠରେ ଏଠାରେ ପୂଜା ପଥାନ୍ତି । ଏଠାକାର ଆଧ୍ୟାତ୍ମିକ ପରିବେଶ ସହିତ ପ୍ରାକୃତିକ ଶୋଭା ଅତ୍ୟନ୍ତ ମନୋମୁଗ୍ଧକର । ପର୍ଯ୍ୟଟକ ଓ ଦର୍ଶକଙ୍କୁ ଆକୃଷ୍ଟ କରୁଥିବା ଏହି ପୀଠ ସଂପର୍କରେ ଏକ ଆଲୋଚନା–**

ଓଡ଼ିଆମାନଙ୍କ ଧାର୍ମିକ ସଂସ୍କୃତିରେ ପଞ୍ଚକ୍ଷେତ୍ରକୁ ଅଧିକ ଗୁରୁତ୍ୱ ଦିଆଯାଇଛି । ପୁରାଣ ଓ କିମ୍ବଦନ୍ତୀ କାଳରୁ ଏହି ପାଞ୍ଚ କ୍ଷେତ୍ରର ମହାତ୍ମ୍ୟକୁ ବେଶ ଭକ୍ତି ସମ୍ମାନ ପ୍ରଦର୍ଶନ କରାଯାଇଥାଏ । ବିଷ୍ଣୁ କ୍ଷେତ୍ର (ପୁରୀ), ଅର୍କକ୍ଷେତ୍ର (କୋଣାର୍କ), ଶୈବକ୍ଷେତ୍ର (ଲିଙ୍ଗରାଜ, ଭୁବନେଶ୍ୱର) ଶକ୍ତି କ୍ଷେତ୍ର (ବିରଜା, ଯାଜପୁର) ଓ ସିଦ୍ଧକ୍ଷେତ୍ର ବା ଗଣେଶ କ୍ଷେତ୍ର (ମହାବିନାୟକ) ମାନଙ୍କରେ ହିନ୍ଦୁ ଧର୍ମର ପରମ ଆରାଧ୍ୟ ଦେବା ଦେବୀଙ୍କ ସାନ୍ନିଧ୍ୟ ଲାଭ କଲେ ମଣିଷ ମୋକ୍ଷ ହୁଏ ଓ ପାପମୁକ୍ତ ହୁଏ ବୋଲି ବହୁ ପୁରାଣରେ ପ୍ରମାଣ ରହିଛି । ପୁରୀ ବା ବିଷ୍ଣୁ କ୍ଷେତ୍ରରେ ସ୍ୱୟଂ ବିଷ୍ଣୁ ଜଗନ୍ନାଥ ରୂପରେ, ଅର୍କ କ୍ଷେତ୍ର କୋଣାର୍କଠାରେ ସୂର୍ଯ୍ୟ, ଶୈବକ୍ଷେତ୍ର ଭୁବନେଶ୍ୱରରେ ଲିଙ୍ଗରାଜ, ଶକ୍ତି କ୍ଷେତ୍ର ଯାଜପୁରରେ



ଶକ୍ତିଦାତ୍ରୀ ମା' ବିରଜାଙ୍କ ପରି ସିଦ୍ଧକ୍ଷେତ୍ର ମହାବିନାୟକଠାରେ ଏହି ପଞ୍ଚ ଦେବଦେବୀମାନେ ଏକ ପୀଠରେ ଆବିର୍ଭାବ ହୋଇଛନ୍ତି ଓ ସବୁ ଶକ୍ତିର ଏହିଠାରେ ସମନ୍ୱୟ ଘଟିଛି ।

ଗଣେଶ, ଭାସ୍କର, ବିଷ୍ଣୁ, ଶିବ, ଦୁର୍ଗା, ତଥୈବଚଃ
ଭିନ୍ନା ଭିନ୍ନ ନ କର୍ତ୍ତବ୍ୟଂ ପଞ୍ଚଦେବ ନମସ୍ତୁତେଃ ।



Digitized by PPRACHIN, SOA

ମହାବିନାୟକ ପୀଠରେ ବିନାୟକ, ସୂର୍ଯ୍ୟ, ବିଷ୍ଣୁ, ଶିବ ଓ ମାତୃଶକ୍ତି ଦୁର୍ଗାଙ୍କର ଏକତ୍ର ମିଳନ ବହୁ ପୌରାଣିକ ତଥ୍ୟକୁ ପ୍ରଭାବିତ କରେ । ସମସ୍ତ ଶକ୍ତିର ଆଧାର ଦେବାଦେବୀ ବିଜେ କରିଥିବା ଏହି ପୀଠକୁ ମହାବିନାୟକ ପୀଠ ନାମରେ ନାମିତ କରାଯାଇଛି । ବିନାୟକ ସର୍ବ ଦେବା ଦେବୀଙ୍କ ଅଗ୍ରତେ ପୂଜିତ ହୋଇଥାନ୍ତି । ପିତାମାତାଙ୍କ ସହିତ ଶ୍ରୀ ଗଣେଶ ପାଳନକର୍ତ୍ତା ବିଷ୍ଣୁ, ଶକ୍ତିଦାତା ସୂର୍ଯ୍ୟଙ୍କୁ ସାଙ୍ଗରେ ଧରି ଏଠାରେ ପୂଜା ପାଇବା ଘଟଣା ଅନ୍ୟତ୍ର ବିରଳ ।


ମହାବିନାୟକ ମନ୍ଦିର

ଶିବ ପାର୍ବତୀଙ୍କ ମନାନ୍ତର ସୃଷ୍ଟି ହେବାପରେ ପାର୍ବତୀ ଗୃହ ତ୍ୟାଗିନୀ ହୋଇଥିଲେ । ପାର୍ବତୀ ଗୁମ୍ଫା ଦ୍ୱାରରେ ପୁତ୍ର ଶ୍ରୀ ଗଣେଶଙ୍କୁ ବସାଇ ଭିତରେ ତପସ୍ୟାରତ ଥିଲାବେଳେ ପିତା ଶିବଙ୍କ ସହିତ ପୁତ୍ର ଗଣପତିଙ୍କର ଯୁଦ୍ଧ ହୋଇଥିଲା । ଶ୍ରୀ ଗଣେଶଙ୍କ ମସ୍ତକ ଛେଦନ ପରେ ହାତୀର ମସ୍ତକ ସଂଯୋଗ ସଂକ୍ରାନ୍ତ ଶ୍ରୀ ଗଣେଶଙ୍କ ଜୀବନ୍ୟାସ କାହାଣୀ ସମସ୍ତଙ୍କୁ ଜଣା । କୁହାଯାଏ- ଶ୍ରୀ ଗଣେଶଙ୍କ ପ୍ରକୃତ ଛେଦିତ ମସ୍ତକ ଏହିଠାରେ ପାତାଳଗାମୀ ହୋଇଥିଲା । ପରେ ଗଣପତି ଏଠାରେ ସ୍ୱୟମ୍ଭୁ ହୋଇ ଆବିର୍ଭାବ ହୋଇଛନ୍ତି । ଗଣେଶଙ୍କୁ ଜୀବନ୍ୟାସ ଦିଆଯିବା ବେଳେ ସକଳ ଦେବାଦେବୀ ରୁଣ୍ଡ ହୋଇଥିଲେ । ସେମାନଙ୍କ ମଧ୍ୟରୁ ଶକ୍ତିଦାତା ସୂର୍ଯ୍ୟ, ପାଳନ କର୍ତ୍ତା ବିଷ୍ଣୁ ଏହିଠାରେ ରହି ଶ୍ରୀ ଗଣେଶଙ୍କ ସହିତ ପୂଜା ପାଇଥାନ୍ତି ।

***କଥିତ ଅଛି :-*** ସ୍ୱୟଂଭୁ ହୋଇ ପଥର ମୂର୍ତ୍ତି ଆକାରରେ ଠାକୁରମାନେ ବାହାରିବା ପରେ ପାହାଡ଼ ଉପରେ ଚରୁଥିବା ଗୋପାଳ ପିଲାର ଗାଈ ଗୋଠରୁ ଗାଈଟିଏ



Digitized by PPRACHIN, SOA

ଦୈନିକ ଏଠାକୁ ଆସି ପଥର ମୂର୍ତ୍ତି ଉପରେ ବିନା ବାଛୁରିରେ ନିଜ ଚିରରୁ କ୍ଷୀର ଝରାଇ ଫେରିଯାଇ ଥାଏ । ଏକଥା ଆସ୍ତେ ଆସ୍ତେ ପ୍ରଚାରିତ ହେବା ପରେ ଗୋଟିଏ ପଥର ଖଣ୍ଡରେ ପାଞ୍ଚ ଦେବାଦେବୀଙ୍କ କାଞ୍ଚନିକ ମୂର୍ତ୍ତିର ଆବିର୍ଭାବ ଓ ପୂଜା ଅର୍ଚ୍ଚନାକୁ ନେଇ ମହାବିନାୟକ ପୀଠର ମାହାତ୍ମ୍ୟ ଆଜି ପ୍ରକଟିତ ।

ପୌରାଣିକ ମତରେ ମହାଭାରତ ଯୁଦ୍ଧରେ ପାଣ୍ଡବମାନେ ବିଜୟ ଲାଭ କରିବା ପାଇଁ ମାତା କୁନ୍ତୀ ଏହିଠାରେ ଲକ୍ଷେ ସ୍ୱର୍ଣ୍ଣ ଚମ୍ପା ଚଢ଼ାଇଥିଲେ ବୋଲି ବର୍ଣ୍ଣିତ ଅଛି ।



ମହାବିନାୟକ ପୀଠର ଅନତି ଦୂରରେ ଅବସ୍ଥିତ ଚଣ୍ଡୀଖୋଲଠାରେ ଅବସ୍ଥିତ ଛିନ୍ନମସ୍ତା ଚଣ୍ଡୀ ପୂଜା ପାଆନ୍ତି । ଏହି ଖୋଲ ସ୍ଥଳକୁ ପାର୍ବତୀ କରିଥିବା ତପସ୍ୟା, ଗୁମ୍ଫା ଓ ମହାବିନାୟକ ପୀଠ ଗୁମ୍ଫାର ଦ୍ୱାରଦେଶ ଥିଲା ବୋଲି କୁହାଯାଏ । ଚଣ୍ଡୀଖୋଲଠାରେ ଏକ ଗଛମୂଳରେ ଛିନ୍ନମସ୍ତା ଚଣ୍ଡୀଙ୍କୁ ରାଣୀବନ୍ଧୀ ଗ୍ରାମର ଜଣେ ସଅର ପୂଜା କରୁଥିଲା । ପରେ ୧୯୨୬ ମସିହାରେ ବାବା ଭୈରବାନନ୍ଦ ବ୍ରହ୍ମଚାରୀ ଆସି ଏଠାରେ ପଦାର୍ପଣ କରିବା ପରେ ବିକ୍ଷିପ୍ତ ଭାବେ ପଡ଼ିଥିବା ମୂର୍ତ୍ତିକୁ ସଂଗ୍ରହ କରି ମନ୍ଦିର ପ୍ରତିଷ୍ଠା କରିଥିଲେ ।

ବରୁଣେଇ ପାହାଡ଼ ଉପରେ ଅବସ୍ଥିତ ଚଣ୍ଡୀଖୋଲ ଓ ମହାବିନାୟକ ପୀଠରେ ପ୍ରାକୃତିକ ସୌନ୍ଦର୍ଯ୍ୟ ରାଜି ଏହି ଦୁଇ ଦେବସ୍ଥଳକୁ ବେଶ ଆଧ୍ୟାତ୍ମିକ ଓ ଶାନ୍ତ ସ୍ଥଳୀରେ ପରିଣତ କରୁଛି । ସମଗ୍ର ବରୁଣେଇ ପାହାଡଟି ଗୋଟିଏ ହାତୀ ଶୋଇଥିବା ପରି ଦୃଶ୍ୟ ବହନ କରେ । ବହୁ ଦୂରରୁ ଦିଶୁଥିବା ପାଖାପାଖି ଖୋଲ ଦୁଇଟି ମହାବିନାୟକ ଓ ଚଣ୍ଡୀଖୋଲ ଅଟେ ।

ଏହି ବରୁଣେଇ ପାହାଡ଼ ଚତୁଃପାର୍ଶ୍ୱରେ ଗଚ୍ଛିତ ଅନେକ ମଠ ମନ୍ଦିର, ଝରଣା, ତେଲିଗଡ଼ର ଐତିହାସିକ କିମ୍ବଦନ୍ତୀ, ତଥା ବୃକ୍ଷଲତାର ପ୍ରାକୃତିକ ଶୋଭା ଅତ୍ୟନ୍ତ ଶାନ୍ତ, କମନୀୟ ଓ ମନୋରମ ଅଟେ । ଏହି ବରୁଣେଇ ପାହାଡ଼କୁ ବାରୁଣାବନ୍ତ ପାହାଡ଼ ବୋଲି କହୁଯାଉଛି ।

ଠିକ୍ ମହାବିନାୟକ ମନ୍ଦିରର ଉପରି ଭାଗରେ ଅବସ୍ଥିତ କନକଦୁର୍ଗାଙ୍କ ମନ୍ଦିର ଅତ୍ୟନ୍ତ ଦର୍ଶନୀୟ ଓ ସ୍ୱାସ୍ଥ୍ୟକର ସ୍ଥାନ ଅଟେ । ପାହାଡ଼ ଖୋଲରେ ୩ ଶହରୁ ୪ ଶହ ଫୁଟ ଉଚ୍ଚରେ ଏହି ଦେବୀ ଅଛନ୍ତି । ବହୁ ପୁରାତନ କାଳରୁ ଶବରମାନେ ପାହାଡ଼ର ଗଛ ମୂଳରେ ପଡ଼ିଥିବା କନକ ଦୁର୍ଗାଙ୍କୁ ପୂଜା ଅର୍ଚ୍ଚନା କରୁଥିଲେ । ଦେବୀଙ୍କର ୮ଟି



Digitized by PPRACHIN, SOA

ହାତ ଥିବାରୁ ଏହାକୁ ଅଷ୍ଟଭୂଜା ଦୁର୍ଗା ବୋଲି କହନ୍ତି । କନକ ଦୁର୍ଗାଙ୍କ ପୀଠ ଦେଇ ପ୍ରବାହିତ ଝରଣାର ପାଣି ଓ ଦୃଶ୍ୟ ଅତ୍ୟନ୍ତ ମନୋମୁଗ୍ଧକର । ଏବେ ଏଠାରେ ସମାଜସେବୀ ଶ୍ରୀ ଗୋଲଖ ଷଡ଼ଙ୍ଗୀ ରହି ଦେବୀଙ୍କ ମନ୍ଦିର ବେଢ଼ା, ପାହାଚ ନିର୍ମାଣ କରାଉଛନ୍ତି । କନକଦୁର୍ଗାଠାରେ ଠିଆ ହୋଇ ତଳକୁ ଚାହିଁଲେ ପ୍ରାକୃତିକ ଶୋଭାରାଜି ଓ ଅପୂର୍ବ ଦୃଶ୍ୟ ସମସ୍ତଙ୍କୁ ଭାବ ବିହ୍ୱଳ କରିଥାଏ ।

ମହାବିନାୟକ ପୀଠ ଓ ଚଣ୍ଡୀଖୋଲର ଅନ୍ୟ ଏକ ଉପଭୋଗ୍ୟ ବିଷୟ ପାତିମାଙ୍କଡମାନଙ୍କର ଲୀଳାଖେଳା ।

ଶିବରାତ୍ରୀ ଦିନ ବିଶ୍ୱଶାନ୍ତି ମହାଯଜ୍ଞ ଉପଲକ୍ଷେ ମହାବିନାୟକ ପୀଠର ପ୍ରସିଦ୍ଧ ମେଳା ଅନୁଷ୍ଠିତ ହୋଇଥାଏ । ଏହାଛଡ଼ା ମହାବିଷୁବ ସଂକ୍ରାନ୍ତି, ଚନ୍ଦନ ପୂର୍ଣ୍ଣିମା, ରଜସ୍ନାନ, ଗହ୍ମା ପୂର୍ଣ୍ଣିମା, ଚିତାଲାଗି ଅମାବାସ୍ୟା, ଝୁଲଣଯାତ୍ରା, ନୂଆଖିଆ, ରାଧାଷ୍ଟମୀ, ଦଶହରା, ରାହାସ ପୂର୍ଣ୍ଣିମା, ପ୍ରଥମାଷ୍ଟମୀ, ଧନୁ ଓ ମକର ସଂକ୍ରାନ୍ତି, ଅଗ୍ନିଉତ୍ସବ ଗଣେଶ ପୂଜା ଦିନ ଏଠାରେ ପର୍ବ ପାଳିତ ହୋଇଥାଏ । ପ୍ରତି ଚତୁର୍ଦ୍ଦଶୀରେ ୨୪ ଥର ଚତୁର୍ଦ୍ଦଶୀ ବେଢ଼ା ପରିକ୍ରମା କରାଯାଏ ଓ ଦୈନନ୍ଦିନ ନିୟମାନୁସାରେ ବିଭିନ୍ନ ନୀତି ନିୟମରେ ଠାକୁରଙ୍କ ପୂଜାଅର୍ଚ୍ଚନା ହୋଇଥାଏ ।

କାଳକ୍ରମେ ମହାବିନାୟକ ଉଚ୍ଚରେ ବଢୁଥିଲେ । ଠାକୁରଙ୍କ ମସ୍ତକରେ ଦହି, ମହୁ ଲହୁଣି ଲେପନ କରିବା ପାଇଁ ବଡ଼ପଣ୍ଡା ପୂଜକର ହାତ ନ ପାଇବାରୁ ସେ ତାଙ୍କ ଗଡୁରେ ଠାକୁରଙ୍କୁ ପିଟିଦେଇ ବିରକ୍ତି ପ୍ରକାଶ କରିଥିଲେ । ସେହି ଦିନଠାରୁ ଠାକୁରଙ୍କ ପଥରମୂର୍ତ୍ତି ଉଚ୍ଚରେ ନ ବଢ଼ି ଗୋଲେଇ ଅକାରରେ ବଢ଼ନ୍ତି ବୋଲି କୁହାଯାଏ ।

କଟକ ସହରରୁ ୪୫ କିଲୋମିଟର ଜାତୀୟ ରାଜପଥରେ ବାଲେଶ୍ୱର ଆଡ଼କୁ ଆସିଲେ ଚଣ୍ଡୀଖୋଲ ଓ ମହାବିନାୟକ ପୀଠ ପଡ଼େ । ଏହି ସ୍ଥାନଟି ଦକ୍ଷିଣ-ପୂର୍ବ ରେଳପଥ ଓ ଜାତୀୟ ରାଜପଥ ଆଦିର ଏକ ଜଙ୍କସନରେ ପରିଣତ ହୋଇଗଲାଣି ଓ ଜାତୀୟ ମାନଚିତ୍ରରେ ସ୍ଥାନ ପାଇଲାଣି । ଏବେ ଏଠାକୁ ଶୈଳନିବାସରୂପେ ବ୍ୟବହାର କରିବାକୁ ବହୁଯାତ୍ରୀ ଓ ପର୍ଯ୍ୟଟକ ଆସୁଛନ୍ତି ।



ସାମ୍ବାଦିକ 'ସମାଜ'
ଚଣ୍ଡୀଖୋଲ





Digitized by PPRACHIN, SOA

# ଯାଜପୁର ଜିଲ୍ଲାର ବିଦ୍ୟୁତ୍ ବ୍ୟବସ୍ଥା

ଏହି ଜିଲ୍ଲାର ବିଦ୍ୟୁତ୍ ବ୍ୟବସ୍ଥାକୁ ଯାଜପୁର ରୋଡ଼ ଓ କଟକ ସ୍ଥିତ ବିଦ୍ୟୁତ୍ ଡିଭିଜନ ଉପରେ ନ୍ୟସ୍ତ କରାଯାଇଛି । ବଡ଼ଚଣା ଅଞ୍ଚଳକୁ କଟକ ଡିଭିଜନ ଅନ୍ତର୍ଗତ ବଡ଼ଚଣା ସବ୍‌ଡିଭିଜନ ଅଧିନରେ ରଖାଯାଇଥିବା ବେଳେ ଜିଲ୍ଲାର ଅନ୍ୟ ସମସ୍ତ ଅଞ୍ଚଳକୁ ଯାଜପୁର ରୋଡ଼ ବିଦ୍ୟୁତ୍ ଡିଭିଜନ ଅଧିନରେ ରଖାଯାଇଛି ।

**ଯାଜପୁର ରୋଡ଼ ବିଦ୍ୟୁତ୍ ଡିଭିଜନ :**

ସ୍ଥାପିତ : ତା. ୧.୮.୧୯୭୦ ରିଖ

ନିର୍ବାହୀଯନ୍ତ୍ରୀଙ୍କ ନାମ : ଇଂ ବଟକୃଷ୍ଣ ମହାନ୍ତି

ଟେଲିଫୋନ ନମ୍ବର : ୦୬୭୨୬-୨୦୨୭୩

ମୋଟ ସବ୍‌ଡିଭିଜନ ସଂଖ୍ୟା : ୫

ସେକସନ୍ ସଂଖ୍ୟା : ୧୯

| ସବଡିଭିଜନର ନାମ | ସେକସନର ନାମ | ମୋଟ ୩୩ କେ.ଭି ଲାଇନ (କ.ମି.) | ମୋଟ ୧୧ କେ.ଭି ଲାଇନ (କି.ମି.) | ମୋଟ ଏଲ.ଟି ଲାଇନ | ଗ୍ରାହକ ସଂଖ୍ୟା |
|---|---|---|---|---|---|
| ଯାଜପୁର ରୋଡ | ଯାଜପୁର ରୋଡ | ୧୦.୫୦ | ୫୫.୦୫ | ୨୧୨.୫୩ | ୪୫୪୫ |
| | ସୁକିନ୍ଦା | ୧୮.୧୦ | ୧୧୬.୫୫ | ୮୫.୪୧ | ୧୯୪୬ |
| | ଡୁବୁରୀ | ୮୮.୨୦ | ୯୦.୨୦ | ୫୯.୭୦ | ୧୦୨୨ |
| | ଦାନଗଦି | ୦.୪୦ | ୪୯.୨୨ | ୬୧.୧୫ | ୧୨.୪୩ |
| | କୋରେଇ | --- | ୧୦୦.୮୦ | ୧୯୮.୪୯ | ୧୯୮୧ |
| ଯାଜପୁର ୧ | ଯାଜପୁର ୧ | ୩୦.୫୦ | ୨୨.୮୦ | ୭୬.୦୭ | ୩୮୧୮ |
| | ଯାଜପୁର ୨ | --- | ୭୧.୭୦ | ୧୮୭.୧୭ | ୨୫.୩୭ |
| | ପାଣିକୋଇଲି | ୧୦.୫୦ | ୯୨.୫୯ | ୧୪୦.୨୯ | ୨୭୩୭ |



Digitized by PPRACHIN, SOA

| | | | | | |
|---|---|---|---|---|---|
| ଯାଜପୁର ୨ | ବିଂଝାରପୁର | ୨୧.୨୦ | ୬୮.୯୦ | ୧୭୯.୭୨ | ୩୩.୩୫ |
| | ବାଲମୁକୁଳି | --- | ୩୮.୭୦ | ୮୬.୨୦ | ୨୩୪୬ |
| | ଦଶରଥପୁର | --- | ୭୫.୩୮ | ୨୦୬.୮୮ | ୩୯୩୩ |
| | ମଙ୍ଗଳପୁର | ୨୩.୦୦ | ୫୯.୬୬ | ୧୨୪.୬୫ | ୨୧୭୭ |
| ବରୀ | ବରୀ | --- | ୬୦.୫୦ | ୧୬୩.୬୪ | ୩୩୭୩ |
| | ଅମଟପୁର | --- | ୫୧.୫୦ | ୯୧.୮୫ | ୧୪୨୭ |
| | ସୁଜନପୁର | ୨୨.୭୦ | ୫୫.୮୦ | ୧୩୯.୨୧ | ୨୩.୪୩ |
| ଧର୍ମଶାଳା | ଛାରକା | ୨୭.୮୦ | ୫୨.୧୦ | ୧୦୮.୬୦ | ୨୪୮୩ |
| | କୁଆଖିଆ | ୧୨.୨୭ | ୧୦୮.୫୦ | ୨୧୫.୬୦ | ୪୬୯୨ |
| | ନେଉଳପୁର | ୧୯.୦୦ | ୭୭.୭୫ | ୭୫.୦୪ | ୧୪.୯୬ |
| | କବାଟବନ୍ଧ | ୧୫.୧୦ | ୫୦.୮୦ | ୮୦.୨୦ | ୧୫.୬୯ |
| | ମୋଟ | ୨୯୯.୨୭, | ୧୨୯୮.୫୦ | ୨୭୯୨.୪୦ | ୪୮୯୯୩ |

ମୋଟ ୫୦୦ କେଭିଏ ଟ୍ରାନସ୍‌ଫରମର ସଂଖ୍ୟା : ୩
ମୋଟ ୨୫୦ କେଭିଏ ଟ୍ରାନସ୍‌ଫରମର ସଂଖ୍ୟା : ୧୮
ମୋଟ ୨୦୦ କେଭିଏ ଟ୍ରାନସ୍‌ଫରମର ସଂଖ୍ୟା : ୧
ମୋଟ ୧୦୦ କେଭିଏ ଟ୍ରାନସ୍‌ଫରମର ସଂଖ୍ୟା : ୩୫୫
ମୋଟ ୬୩ କେଭିଏ ଟ୍ରାନସ୍‌ଫରମର ସଂଖ୍ୟା : ୪୦୯
ମୋଟ ୫୦ କେଭିଏ ଟ୍ରାନସ୍‌ଫରମର ସଂଖ୍ୟା : ୧୪
ମୋଟ ୨୫ କେଭିଏ ଟ୍ରାନସ୍‌ଫରମର ସଂଖ୍ୟା : ୨୩୦

**ମନ୍ତବ୍ୟ : (ତାର ଚୋରି)**

୧୯୯୬-୯୭ ମସିହାରେ କେତେଥର ତାର ଚୋରି ଯାଇଛି : ୮୨ ଥର
ତାରର ଲମ୍ବ : ୧୨୭.୭୧ କି.ମି.
ଆନୁମାନିକ ମୂଲ୍ୟ : ୧୬,୬୦,୫୦୦ ଟଙ୍କା

୧୯୯୭-୯୮ ମସିହାରେ କେତେଥର ତାର ଚୋରି ଯାଇଛି : ୭୮ ଥର
ତାରର ଲମ୍ବ : ୧୩୩.୧୫ କି.ମି.
ଆନୁମାନିକ ମୂଲ୍ୟ : ୧୭,୦୫,୬୦୦ ଟଙ୍କା

**କଟକ ସବଡିଭିଜନ ଅନ୍ତର୍ଗତ ବଡ଼ଚଣା ସବଡିଭିଜନ :**

ସେକସନ୍ ସଂଖ୍ୟା : ୩, (କ) : ବଡ଼ଚଣା, (ଖ) ବାଲିଚନ୍ଦ୍ରପୁର, (ଗ) ଛତିଆ ।

**ସବଡିଭିଜନ ଟେଲିଫୋନ ନମ୍ବର : ୦୬୭୨୫ - ୨୨୨୬**

(ଅଧିକ ତଥ୍ୟ ନମିଳିବାରୁ ଆମ୍ଭେ ପ୍ରକାଶ କରିବାକୁ ଅକ୍ଷମ)





Digitized by PPRACHIN, SOA

# ଯାଜପୁର ଜିଲ୍ଲାର ସ୍ୱେଚ୍ଛାସେବୀ ସଙ୍ଗଠନ

ଆମ ଓଡ଼ିଶା ପ୍ରଦେଶରେ ବହୁ କ୍ରିୟାଶୀଳ ସ୍ୱେଚ୍ଛାସେବୀ ସଂଗଠନ ପ୍ରତିଷ୍ଠିତ ହୋଇ ସମାଜ ସେବାରେ ନିୟୋଜିତ ଅଛନ୍ତି । ଏକ ସର୍ଭେ ରିପୋର୍ଟ ଅନୁଯାୟୀ ଆମ ରାଜ୍ୟର ୩୦ଟି ଜିଲ୍ଲାରେ ବର୍ତ୍ତମାନ ସୁଧା ୭୦ ହଜାରରୁ ଊର୍ଦ୍ଧ୍ୱ ସ୍ୱେଚ୍ଛାସେବୀ ସଂଗଠନ ସରକାରୀ ଭାବେ ପଞ୍ଜିକୃତ ହୋଇଛି । ତହିଁ ମଧ୍ୟରୁ ଆମ ଯାଜପୁର ଜିଲ୍ଲାରେ ଚଳିତ ବର୍ଷ ଏପ୍ରିଲ ସୁଧା ୩୦୧୦ ଟି ସ୍ୱେଚ୍ଛାସେବୀ ସଂଗଠନ ଓ କ୍ଲବ୍ ପଞ୍ଜିକୃତ ହୋଇଛି ।

ପ୍ରକୃତ ପକ୍ଷେ ପଞ୍ଜିକୃତ ହୋଇଥିବା ସମସ୍ତ ସ୍ୱେଚ୍ଛାସେବୀ ସଂଗଠନ ଓ କ୍ଲବ ଗୁଡ଼ିକ ବାସ୍ତବ କ୍ଷେତ୍ରରେ କାର୍ଯ୍ୟକ୍ଷମ ନୁହନ୍ତି । ଏଥି ମଧ୍ୟରୁ ମାତ୍ର ୫୧ଟି ସ୍ୱେଚ୍ଛାସେବୀ ସଂଗଠନ ଓ ୨୦ ଟି କ୍ଲବକୁ ମିଶାଇ ମୋଟ ୩୧ଟି ସଂସ୍ଥା ଆମ ଜିଲ୍ଲାର ପ୍ରାୟତଃ ୧୩ ଲକ୍ଷ ୫୦ ହଜାର ଲୋକଙ୍କ ପାଇଁ ବିଭିନ୍ନ କ୍ଷେତ୍ରରେ ସମାଜ ସେବା କରୁଛନ୍ତି । ଏହି ୭୧ ଟି ସଂସ୍ଥା ମଧ୍ୟରୁ ୮ ଟି ସଂସ୍ଥା ଜିଲ୍ଲା ସ୍ତରରେ କାର୍ଯ୍ୟ କରୁଥିବା ବେଳେ ଅବଶିଷ୍ଟ ୬୩ ଟି ସଂସ୍ଥା ବ୍ଲକ୍ ଓ ପୌର ପରିଷଦ ସ୍ତରରେ କାର୍ଯ୍ୟ କରୁଛନ୍ତି ।

ଉପରୋକ୍ତ ୭୧ ଟି ସ୍ୱେଚ୍ଛା ସେବୀ ସଂଗଠନ ମଧ୍ୟରୁ ଜିଲ୍ଲାସ୍ତରରେ କାର୍ଯ୍ୟ କରୁଥିବା ୮ ଟି ସଂସ୍ଥାକୁ ବାଦ ଦେଲେ ଅନ୍ୟ ୬୩ ଟି ସଂସ୍ଥା ମଧ୍ୟରୁ ବିଂଝାରପୁର ବ୍ଲକ୍‌ରେ ୫ ଟି ସଂସ୍ଥା, ବରୀ ବ୍ଲକରେ ୨ ଟି ସଂସ୍ଥା, ଦଶରଥପୁର ବ୍ଲକ୍‌ରେ ୬ଟି ସଂସ୍ଥା ଯାଜପୁର ବ୍ଲକରେ ୩ ଟି ସଂସ୍ଥା, ଦାନଗଦି ବ୍ଲକ୍‌ରେ ମାତ୍ର ଗୋଟିଏ ସଂସ୍ଥା କାର୍ଯ୍ୟ କରୁଥିବା ବେଳେ ସୁକିନ୍ଦା ବ୍ଲକ୍‌ରେ ୪ ଟି ସଂସ୍ଥା, କୋରାଇ ବ୍ଲକ୍‌ରେ ୨ ଟି ସଂସ୍ଥା, ଧର୍ମଶାଳା ବ୍ଲକ୍‌ରେ ୧୨ ଟି ସଂସ୍ଥା, ରସୁଲପୁର ବ୍ଲକ୍‌ରେ ୭ ଟି ସଂସ୍ଥା ସମେତ ବଡ଼ଚଣା ବ୍ଲକରେ ସର୍ବାଧିକ ୧୩ ଟି, ଯାଜପୁର ରୋଡ୍ ପୌର ପରିଷଦ ଅଞ୍ଚଳରେ ଦୁଇଟି ସଂସ୍ଥା ଓ ଯାଜପୁର ପୌର ପରିଷଦ ଅଞ୍ଚଳରେ ଦୁଇଟି ସ୍ୱେଚ୍ଛାସେବୀ ସଂଗଠନ କାର୍ଯ୍ୟ କରୁଥିବା ଏକ ଅନୁସନ୍ଧାନରୁ ଜଣାଯାଇଛି । ଜିଲ୍ଲା ସ୍ତରରେ କାର୍ଯ୍ୟ କରୁଥିବା ୮ଟି ସଂସ୍ଥା ମଧ୍ୟରୁ ୨ ଟି ସଂସ୍ଥା ଧର୍ମଶାଳା ଅଞ୍ଚଳର ହୋଇଥିବା ବେଳେ ଅନ୍ୟ ୬ ଟି ଯାକ ସଂସ୍ଥା ଯାଜପୁର ଅଞ୍ଚଳର ଅଟନ୍ତି ।

**ଜିଲ୍ଲା ସ୍ତରରେ କାର୍ଯ୍ୟ କରୁଥିବା ସ୍ୱେଚ୍ଛାସେବୀ ସଂଗଠନଗୁଡ଼ିକ ହେଉଛି :-**

**ଜଗନ୍ନାଥ ଦେଶମ୍ ୟୁଥ୍ କ୍ଲବ :-** ଏହି ସ୍ୱେଚ୍ଛାସେବୀ ସଂଗଠନଟି ୧୯୮୬ ମସିହାରେ ଧର୍ମଶାଳା ବ୍ଲକ୍‌ର ଗୋଡ଼ିପାଟିଆଠାରେ ସ୍ଥାପିତ ହୋଇଥିଲା । ଦିର୍ଘ ୧୦ ବର୍ଷରୁ ଅଧିକ ଦିନ ହେବ ଅବିରାମଭାବରେ ସମାଜ ସେବାରେ ନିୟୋଜିତ ରହିଛି । ଏହି ସଂସ୍ଥାଟି



Digitized by PPRACHIN, SOA

ମୁଖ୍ୟ ସମାଜର ଅବହେଳିତ ଲୋକ ଯଥା : ଅନ୍ଧ, ମୂକ, ବଧିର ଓ ଅସ୍ଥିସଲ୍ୟ ବିକଳାଙ୍ଗମାନଙ୍କ ପାଇଁ କାର୍ଯ୍ୟ କରୁଛି । ଏହି ସମୟ ମଧ୍ୟରେ ଅବିଭକ୍ତ କଟକ ଜିଲ୍ଲା ଓ ଜିଲ୍ଲା ବାହାରେ ୨୦ ଟିରୁ ଅଧିକ ସ୍ୱାସ୍ଥ୍ୟସେବା ଶିବିର ଓ ୧୦ ଗୋଟିରୁ ଅଧିକ ଉପକରଣ ବଣ୍ଟନ ଶିବିର କରାଯାଇ ବିକଳାଙ୍ଗମାନଙ୍କୁ ବିଭିନ୍ନ ପ୍ରକାର ସାହାଯ୍ୟ ସହଯୋଗ ସଂସ୍ଥା ମାଧ୍ୟମରେ ଯୋଗାଇ ଦିଆଯାଇଛି ।

**ଶ୍ରୀ ଜଗନ୍ନାଥ ଏଗ୍ରୋଡେଭଲପ ସୋସାଇଟି :-** ଗତ ୧୯୯୫-୯୬ ମସିହାରୁ ଧର୍ମଶାଳା ବ୍ଲକ୍‌ରେ ଚଢ଼େଇଧରାର ଆନନ୍ଦ ବଜାରରେ ସ୍ଥାପିତ ହୋଇଛି । ଏହି ସଂସ୍ଥା ମୁଖ୍ୟ ପରିବେଶ ସୁରକ୍ଷା, ଜଙ୍ଗଲ ସୁରକ୍ଷା, ବୃକ୍ଷ ରୋପଣ ସହ କୃଷି ଓ କୃଷକ ମାନଙ୍କର ଉନ୍ନତି କଳ୍ପେ କାର୍ଯ୍ୟ କରୁଅଛି । ଏଥି ସହ ମହିଳା ଓ ଶିଶୁ ବିକାଶ କାର୍ଯ ହାତକୁ ନେଇଛି ।

**ମଦ୍ରର୍ଣ୍ଣ ୟୁଥ କ୍ଲବ :-** ୧୯୮୦ ମସିହାରୁ ଯାଜପୁର ମହାବୀର ଛକଠାରେ ସ୍ଥାପିତ ହୋଇଛି । ଏହି ସଂସ୍ଥା ମୁଖ୍ୟ ପରିବେଶ ସୁରକ୍ଷା, ଗ୍ରାମ୍ୟ ପରିମଳ, ଅକ୍ଷୟ ଶକ୍ତିର ବିକାଶ, ଗ୍ରାମାଞ୍ଚଳରେ ଗୋବର ଗ୍ୟାସର ପ୍ରଚଳନ କ୍ଷେତ୍ରରେ କାର୍ଯ୍ୟ କରୁଛି ।

**ଜିଲ୍ଲା ପରିବେଶ ସମିତି :-** ଏହା ଯାଜପୁର ଜିଲ୍ଲା ଗଠନପରେ ସରକାରୀ ପଦାଧିକାରୀ ଓ କେତେ ସ୍ୱେଚ୍ଛାସେବକଙ୍କୁ ନେଇ ଗଠିତ ହୋଇଛି । ଏହି ସଂସ୍ଥା ଜିଲ୍ଲାର ସର୍ବାଙ୍ଗ ସୁନ୍ଦର ପାଇଁ କାର୍ଯ୍ୟ କରୁଛି । ଜିଲ୍ଲାର ଛୋଟ ଛୋଟ ସ୍ୱେଚ୍ଛାସେବୀ ସଂଗଠନମାନଙ୍କୁ ସାହାଯ୍ୟ ସହଯୋଗ ଦେଇ ପରିବଶେ ସଂପର୍କରେ କାର୍ଯ୍ୟ କରିବାକୁ ପ୍ରେରଣା ଯୋଗାଉଛି ।

**ଯାଜପୁର ଜିଲ୍ଲା ସମ୍ବାଦିକ ସଂଘ :-** ଯାଜପୁର ଜିଲ୍ଲା ଗଠନ ପରେ ଜିଲ୍ଲାର ସମସ୍ତ ସାମ୍ବାଦିକମାନଙ୍କୁ ନେଇ ଏହା ଗଠିତ ହୋଇଛି । ଏହାର ଉଦ୍ଦେଶ୍ୟ ଭିନ୍ନ ଥିଲେ ମଧ ଏହା ଜିଲ୍ଲା ସ୍ତରରେ ଏକ ସ୍ୱେଚ୍ଛା ସେବୀ ସଂଗଠନ ପରି କାର୍ଯ୍ୟ କରୁଛି ।

**ଜିଲ୍ଲା ସାଂସ୍କୃତିକ ସମିତି :-** ଏହି ସଂସ୍ଥାଟି ମଧ ଜିଲ୍ଲା ପୁର୍ନଗଠନ ପରେ ଗଠିତ ହୋଇଛି ଏଥିରେ ଜିଲ୍ଲାପାଳ ଓ ଜିଲ୍ଲାର ଅନ୍ୟ ଅଧିକାରୀମାନଙ୍କ ସହ କେତେକ ସ୍ୱେଚ୍ଛାସେବୀଙ୍କୁ ମଧ ସାମିଲ କରାଯାଇଛି । ଜିଲ୍ଲାରେ କିପରି ସଂସ୍କୃତିର ପାରମ୍ପାରିକତା ବଜାୟ ରହିବ ସେଥିପ୍ରତି ଏହା କାର୍ଯ୍ୟ କରୁଛି । ଜିଲ୍ଲାର ସଂସ୍କୃତି କ୍ଷେତ୍ରରେ କାର୍ଯ୍ୟ କରୁଥିବା ଛୋଟ ଛୋଟ ସଂସ୍ଥାଗୁଡ଼ିକୁ ଏହା ସାହାଯ୍ୟ ସହଯୋଗ କରୁଛି ।

**ଲାୟନସ୍ କ୍ଲବ୍ :-** ଏହା ଜିଲ୍ଲା ସ୍ତରର ଏକ ସ୍ୱେଚ୍ଛାସେବୀ ସଂସ୍ଥା । ଜିଲ୍ଲା ପୁନର୍ଗଠନ ପରେ ବିଭିନ୍ନ ସମୟରେ ବହୁ ଜନହିତକର କାର୍ଯ୍ୟକ୍ରମ ହାତକୁ ନେଇଛି । ଏପରି କି ପ୍ରାକୃତିକ ବିପର୍ଯ୍ୟୟ ସମୟରେ ଲୋକମାନଙ୍କୁ ଏହି ସଂସ୍ଥା ସାହାଯ୍ୟ ଯୋଗାଇ ଦେଇଛି ।

**ଜିଲ୍ଲା ଆଥଲେଟିକ୍ ଆସୋସିଏସନ୍ :-** ଏହା ଜିଲ୍ଲା ପୁନର୍ଗଠନ ପରେ ୧୯୯୫ ମସିହା ପରେ ଗଠିତ ହୋଇଛି । ଏହାର ମୂଳ ଲକ୍ଷ ହେଉଛି ଜିଲ୍ଲାରେ କ୍ରିଡ଼ାର ପ୍ରଶାର କରିବା ଓ କ୍ରିଡ଼ା ପ୍ରତିଭାମାନଙ୍କୁ ସହଯୋଗ କରି ସେମାନଙ୍କର ଭବିଷ୍ୟତର ପ୍ରତିଭାକୁ



Digitized by PPRACHIN, SOA

ଉଦ୍ଜୀବିତ କରିବା, ହେଲେ ଏହା ଏକ ସ୍ୱେଚ୍ଛାସେବୀ ସଂଗଠନ ପରି କାର୍ଯ୍ୟ କରୁଛି । ବିଭିନ୍ନ ସମୟରେ ଜିଲ୍ଲାର ଅଭାବଗ୍ରସ୍ତ ଲୋକଙ୍କୁ ଯଥାସମ୍ଭବ ସାହାଯ୍ୟ ସହଯୋଗ କରୁଅଛି ।

ଏତଦ୍‌ଭିନ୍ନ ଜିଲ୍ଲାର ବ୍ଲକ୍ ଅଞ୍ଚଳରେ କାର୍ଯ୍ୟ କରୁଥିବା ଅନ୍ୟ ୬୩ ଟି ସ୍ୱେଚ୍ଛାସେବୀ ସଂଗଠନ ମଧ୍ୟରୁ -

**● ବିଂଝାରପୁର ବ୍ଲକ୍‌ରେ କାର୍ଯ୍ୟ କରୁଥିବା ୫ ଟି ସଂସ୍ଥା ହେଉଛି :-**

**ଗ୍ରାମିଣ ବିକାଶ କେନ୍ଦ୍ର :-** ଏହା ୧୯୯୪-୯୫ ମସିହାରେ ବିଂଝାରପୁର ବ୍ଲକର କଣ୍ଟିପୁରଠାରେ ସ୍ଥାପିତ ହୋଇଛି । ଗ୍ରାମାଞ୍ଚଳର ବିକାଶ ପାଇଁ ଶିକ୍ଷା ଓ ସାଂସ୍କୃତିକ କାର୍ଯ୍ୟକ୍ରମମାନ ହାତକୁ ନେଇଛି ।

**'ଇଣ୍ଡୋସିସ୍'** (INDOSSYS) : ୧୯୯୫-୯୬ ମସିହାରେ ସ୍ଥାପିତ ହୋଇ କଣ୍ଟିପୁର ଅଞ୍ଚଳରେ ଶିକ୍ଷା, ସ୍ୱାସ୍ଥ୍ୟ ସେବା ଓ ମହିଳାମାନଙ୍କ ପାଇଁ ବିଭିନ୍ନ ପ୍ରକାର କାର୍ଯ୍ୟ କରୁଅଛି ।

**'ଜନଚେତନା'** ଏହି ସ୍ୱେଚ୍ଛା ସେବୀ ସଂସ୍ଥାଟି ୧୯୯୪ ମସିହାରେ ଚକ୍ରପୁର ଅଞ୍ଚଳରେ ସ୍ଥାପିତ ହୋଇ ଏ ଅଞ୍ଚଳବାସୀଙ୍କ ମନରେ ପରିବେଶ ପ୍ରତି ସଚେତନତା ସୃଷ୍ଟି ପାଇଁ ଉନ୍ନୟନ ମୂଳକ କାର୍ଯ୍ୟ କରୁଛି ।

**'ରେସଡୋ' 'RESDO' :-** ଏହି ସଂସ୍ଥାଟି ୧୯୯୬-୯୭ ମସିହାରେ ସ୍ଥାପିତ ହୋଇଛି । ଉପରୋକ୍ତ ବ୍ଲକରେ ମହାନ୍ତିପଡା ଅଞ୍ଚଳରେ ଲୋକଙ୍କ ପାଇଁ ଅଣ ଆନୁଷ୍ଠାନିକ ଶିକ୍ଷା ଓ ସ୍ୱାସ୍ଥ୍ୟ ସଂପର୍କିତ କାର୍ଯ୍ୟ କରୁଛି ।

**ଆଶାନାୟକମ୍ ସେବା ସଂଘ :-** ବିଗତ ୧୯୭୭-୭୮ ମସିହାରୁ ସ୍ଥାପିତ ହୋଇ ମନ୍ଦାରି ଅଞ୍ଚଳରେ କାର୍ଯ୍ୟ କରୁଛି । ଏହି ସଂସ୍ଥାଟିର ମୂଳ ଲକ୍ଷ ହେଉଛି ସମାଜରେ ଅବହେଳିତ ପୂର୍ଣ୍ଣ ବୃଦ୍ଧାବାସ କରି ସେମାନଙ୍କୁ ଉଚିତ ସେବା ଦେବା ଓ ପରିବେଶ ସୁରକ୍ଷା ପାଇଁ କିଛି କାର୍ଯ୍ୟ କରିବା ।

**● ବରୀ ବ୍ଲକରେ କାର୍ଯ୍ୟ କରୁଥିବା ୬ ଟି ସ୍ୱେଚ୍ଛାସେବୀ ସଂଗଠନ ହେଉଛି :-**

**ଅଭିମନ୍ୟୁ ଯୁବକ ସଂଘ :-** ଏହା ବିଗତ ୧୯୮୦ ମସିହାରୁ ଅଭିମନ୍ୟୁ ବାଲିଆ ଅଞ୍ଚଳରେ ସ୍ଥାପିତ ହୋଇ ଲୋକମାନଙ୍କ ପାଇଁ ଓ ପରିବେଶ ସୁରକ୍ଷା ପାଇଁ ବୃକ୍ଷରୋପଣ, କାର୍ଯ୍ୟକ୍ରମ କରୁଅଛି ।

**ଓଡ଼ିଶା ଇନଷ୍ଟିଚିଉଟ୍ ଅଫ ଏଜୁକେସନ ଆଣ୍ଡ ସୋସିଆଲ ଡେଭଲପମେଣ୍ଟ :-** ୧୯୮୯-୯୦ ରୁ ଗୋବିନ୍ଦପୁର ଅଞ୍ଚଳରେ ସ୍ଥାପିତ ହୋଇ ଗ୍ରାମ୍ୟ ବିକାଶ ଉପରେ ଗୁରୁତ୍ୱ ଦେଇ ଏ ସମ୍ବନ୍ଧୀୟ ବିଭିନ୍ନ କାର୍ଯ୍ୟକ୍ରମ କରୁଅଛି ।

**ନେତାଜି ଯୁବ ପରିଷଦ :-** ଏହା ଗତ ୯୭ ମସିହାରୁ ରୁସିପୁର ଅଞ୍ଚଳରେ ସ୍ଥାପିତ ହୋଇ ପରିବେଶ ପ୍ରଦୂଷଣ ନିୟନ୍ତ୍ରଣ ଓ ବୃକ୍ଷ ରୋପଣ କାର୍ଯ୍ୟକ୍ରମ କରୁଅଛି ।



Digitized by PPRACHIN, SOA

**ଓଡ଼ିଶା ମହିଳା ବିକାଶ ସମିତି :-** ଚଳିତ ୧୯୯୭-୯୮ ରେ ଉକ୍ତ ବ୍ଲକର ନାଥପୁର ଠାରେ ସ୍ଥାପିତ ହୋଇ ନାରୀ ଓ ଶିଶୁ ବିକାଶ ଉପରେ କାର୍ଯ୍ୟ କରୁଛି ।

**ଗୋପବନ୍ଧୁ ଯୁବ ସଂସଦ :-** ଏହି ସଂସ୍ଥା ବିଗତ ୧୯୭୯-୮୦ ମସିହାରୁ ରୁସିପୁର ଅଞ୍ଚଳରେ ଗଢ଼ି ଉଠିଛି । ଏହା ମୁଖ୍ୟ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ସଂପର୍କିତ କାର୍ଯ୍ୟ କରୁଛି ।

**ମାନବ ମଙ୍ଗଳ :-** ଏହି ସ୍ୱେଚ୍ଛାସେବୀ ସଂଗଠନଟି ୧୯୯୦-୯୧ରେ ପଞ୍ଜିକୃତ ହୋଇ ଗ୍ରାମ୍ୟ ବିକାଶରେ କୃଷିର ପ୍ରାଧାନ୍ୟ ଉପରେ ଲୋକମାନଙ୍କଠାରେ ସଚେତନତା ସୃଷ୍ଟି ପାଇଁ କାର୍ଯ୍ୟ କରୁଛି ।

**● ଦଶରଥ ପୁର ବ୍ଲକରେ କାର୍ଯ୍ୟ କରୁଥିବା ୬ ଟି ସ୍ୱେଚ୍ଛାସେବୀ ସଂଗଠନ ହେଉଛି :-**

**କାଉନସିଲ ଅଫ ଓମ୍ୟାନ :-** ଏହା ବିଗତ ୧୯୮୭-୮୮ ମସିହାରୁ ରାଧାଗାଁଠାରେ ସ୍ଥାପିତ ହୋଇ ଅଦ୍ୟାବଧି ମହିଳାମାନଙ୍କ ପାଇଁ ନାରୀ କଲ୍ୟାଣ ଦିଗରେ କାର୍ଯ୍ୟ କରୁଛି ।

**ଗୋପବନ୍ଧୁ ହସିପିଟାଲ ସେବା ସମିତି :-** ବିଗତ ୧୯୭୯ ମସିହାରୁ ପଞ୍ଜିକୃତ ହୋଇ ପାରିପଦା ନିଜାମପୁର ଅଞ୍ଚଳରେ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ସଂପର୍କିତ କାର୍ଯ୍ୟ କରୁଛି ।

**ଇଷ୍ଟ ଯାଜପୁର ଡ଼େମୋକ୍ରାଟିକ୍ ୟୁଥ ଫ୍ରଣ୍ଟ :-** ୧୯୯୦-୯୧ ରୁ ସ୍ଥାପିତ ହୋଇ ଉକ୍ତ ବ୍ଲକ୍‌ର ପାରିପଦା ଅଞ୍ଚଳରେ ଗ୍ରାମାଞ୍ଚଳ ଲୋକଙ୍କ କଲ୍ୟାଣ ଦିଗରେ କାର୍ଯ୍ୟ କରୁଛି ।

**ଜନକଲ୍ୟାଣ ୟୁଥ କ୍ଲବ୍ :-** ବିଗତ ୧୯୮୦-୮୧ ମସିହାରୁ କଣ୍ଡିବାଙ୍କ ଅଞ୍ଚଳରେ ସ୍ଥାପିତ ହୋଇ ପରିବେଶ ସୁରକ୍ଷା ଓ ଗ୍ରାମ୍ୟ ବିକାଶ ଦିଗରେ କାର୍ଯ୍ୟ କରୁଅଛି ।

**କଳିଙ୍ଗ ଗ୍ରାମ୍ୟ ଶିଳ୍ପ ଉନ୍ନୟନ ସମିତି :-** ଏହା ୧୯୯୧ ମସିହାରେ ନାହାପଡ଼ା ଅଞ୍ଚଳରେ ସ୍ଥାପିତ ହୋଇ ରାଜ୍ୟ ଖଦୀବୋର୍ଡ ସହଯୋଗରେ ଗ୍ରାମାଞ୍ଚଳର ବିକାଶ ଦିଗରେ କାର୍ଯ୍ୟ କରୁଛି ।

**ନିସକୋଇ 'NEESCOI' :-** ଦଶରଥ ପୁରଠାରେ ୧୯୯୫-୯୬ ମସିହାରେ ସ୍ଥାପିତ ହୋଇ ଲୋକଙ୍କୁ ସ୍ୱାସ୍ଥ୍ୟ ଶିକ୍ଷା ସମ୍ପର୍କିତ ସଚେତନତା ଓ ବୈଷୟିକ ତାଲିମ କାର୍ଯ୍ୟକ୍ରମ ପରିଚାଳନା କରୁଛି ।

**● ଯାଜପୁର ବ୍ଲକ୍ ଅଞ୍ଚଳରେ ଯେଉଁ ୩ ଟି ସ୍ୱେଚ୍ଛାସେବୀ ସଂଗଠନ କାର୍ଯ୍ୟ କରୁଛି ସେଗୁଡ଼ିକ ହେଲା :-**

**ଶ୍ରୀଜଗନ୍ନାଥ 'SRDO' :-** ଏହି ସେବା ସଂସ୍ଥାଟି ୧୯୯୧-୯୨ ମସିହାରୁ ପଞ୍ଜିକୃତ ହୋଇ ଉକ୍ତ ବ୍ଲକ୍‌ର ବେରୁଡା ଅଞ୍ଚଳରେ ସମ୍ପୃକ୍ତ ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟମାନ ହତାକୁ ନେଇଛି ।

**'VWC' :-** ଏହା ୧୯୯୦ ମସିହା ପରେ ସୋଲାମପୁର ଅଞ୍ଚଳରେ ସ୍ଥାପିତ ହୋଇ 'ଗ୍ରାମ୍ୟ ବିକାଶରେ ସ୍ୱାସ୍ଥ୍ୟ ଓ ପରିବେଶର ଆବଶ୍ୟକତା ଉପରେ ସେଚତନତା ସୃଷ୍ଟିପାଇଁ କାର୍ଯ୍ୟ କରୁଛି ।



Digitized by PPRACHIN, SOA

**'ଆହ୍ୱାନ'** :- ଏହି ସ୍ୱେଚ୍ଛାସେବୀ ସଂସ୍ଥାଟି କରଡ଼ାପିପଲଠାରେ ୧୯୯୩-୯୪ ମସିହାରେ ସ୍ଥାପିତ ହୋଇ ସ୍ଥାନୀୟ ଅଧିବାସୀଙ୍କ ଅର୍ଥନୈତିକ ବିକାଶ ଦିଗରେ କାର୍ଯ୍ୟ କରୁଛି ଓ କୁଟୀର ଶିଳ୍ପ ସଂକ୍ରାନ୍ତରେ ମାଗଣାରେ ତାଲିମ ଦେଉଛି ।

**● ଦାନଗଦି ବ୍ଲକ୍‌ରେ କାର୍ଯ୍ୟ କରୁଥିବା ମାତ୍ର ଗୋଟିଏ ସଂଗଠନ :-**

**କସ୍ତୁରବା ଓମେନସ୍ ଡେଭଲପମେଣ୍ଟ ସେଣ୍ଟର** :- ଏହି ସେବା ସଂସ୍ଥାଟି ଗତ ୧୯୯୪-୯୫ ବର୍ଷରେ ଦାନଗଦି ବ୍ଲକର ଜଙ୍ଗଲି ଅଞ୍ଚଳ ଫୁଲଝରଠାରେ ସ୍ଥାପିତ ହୋଇ ମୁଖ୍ୟତଃ ନାରୀ ଶିକ୍ଷା, ଶିଶୁ ବିକାଶ ଓ ଜଙ୍ଗଲ ସୁରକ୍ଷା ପାଇଁ କାର୍ଯ୍ୟ କରୁଅଛି ।

**● ସୁକିନ୍ଦା ବ୍ଲକ୍‌ରେ କାର୍ଯ୍ୟ କରୁଥିବା ୪ ଟି ସ୍ୱେଚ୍ଛାସେବୀ ସଂଗଠନ ହେଉଛି :-**

**ଶରଧା 'SARADHA'** :- ୧୯୯୩-୯୪ ମସିହାରେ ସୁକିନ୍ଦା ବ୍ଲକ୍‌ର ବରତଣ୍ଡାଠାରେ ସ୍ଥାପିତ ହୋଇ ଅଦ୍ୟବଧି ଗ୍ରାମାଞ୍ଚଳର ଗରୀବ ହରିଜନ ଓ ଆଦିବାସୀ ଲୋକ ଶିକ୍ଷା ସ୍ୱାସ୍ଥ୍ୟ ଓ ଆର୍ଥିକ ବିକାଶ ଦିଗରେ ବହୁ କାର୍ଯ୍ୟକ୍ରମ କରୁଅଛି ।

**NISW** :- ୧୯୯୩ ଠାରେ କାଳିଆ ପାଣି ଖଣି ଅଞ୍ଚଳରେ ସ୍ଥାପିତ ହୋଇ ଏ ଅଞ୍ଚଳ ବାସୀଙ୍କ ସ୍ୱାସ୍ଥ୍ୟ, ଶିକ୍ଷା ଓ ଗ୍ରାମ୍ୟ ପରିମଳ ବିଷୟରେ କାର୍ଯ୍ୟ କରୁଛି ।

**ରାଧାମାଧବ ଯୁଥ କ୍ଲବ** :- ଏହି ଅନୁଷ୍ଠାନଟି ୧୯୮୬-୮୭ ମସିହାରୁ ଦାମ୍ପିଲା ଗ୍ରାମରେ ସ୍ଥାପିତ ହୋଇ ଅଦ୍ୟାବଧି, ଗ୍ରାମାଞ୍ଚଳରେ ପରିବେଶ ସଚେତନତା ଓ ଜଙ୍ଗଲ ସୁରକ୍ଷା ଦିଗରେ କାର୍ଯ୍ୟ କରୁଛି ।

**ଓଡ଼ିଶା ଗଣଉନ୍ନୟନ ପରିଷଦ** :- ଏହା ୧୯୯୧-୯୨ ମସିହାରେ ସୁକିନ୍ଦା ଗ୍ରାମରେ ସ୍ଥାପିତ ହୋଇ ଗ୍ରାମାଞ୍ଚଳ ଲୋକଙ୍କ ବିକାଶ ପାଇଁ ଖାଦ୍ୟ ଓ ଗ୍ରାମ୍ୟୋଦ୍ୟୋଗ ସଂପର୍କିତ କାର୍ଯ୍ୟମାନ କରିବା ସହ ପରିବେଶ ସୁରକ୍ଷା ଦିଗରେ କାର୍ଯ୍ୟ କରୁଛି ।

● କୋରେଇ ବ୍ଲକରେ କାର୍ଯ୍ୟ କରୁଥିବା ୨ ଟି ସ୍ୱେଚ୍ଛାସେବୀ ସଂଗଠନ ହେଉଛି :-

**ପ୍ରଗତିଶୀଳ ଯୁବ ପରିଷଦ** :- ଏହି ସ୍ୱେଚ୍ଛାସେବୀ ସଂସ୍ଥାଟି ୧୯୭୪-୭୫ ମସିହାରୁ ସ୍ଥାପିତ ହୋଇ ଲୋକମାନଙ୍କ ମନରେ ପରିବେଶ ସୁରକ୍ଷା ସଂପର୍କିତ ସଚେତନତା ସୃଷ୍ଟିପାଇଁ ବିଭିନ୍ନ ପ୍ରକାର ସାଂସ୍କୃତିକ କାର୍ଯ୍ୟମାନ କରୁଅଛି ।

**ଅଗ୍ନିବଳୟ କ୍ରିଏଟିଭ କ୍ଲବ୍** :- ୧୯୯୦ ମସିହାରୁ ପଞ୍ଜିକୃତ ହୋଇ ଉକ୍ତ ବ୍ଲକର ଘନଶ୍ୟାମପୁର ଶାସନ ଅଞ୍ଚଳରେ ଯୁବସମାଜର ଉନ୍ନତି ପାଇଁ ଯୁବ ଶିବିର ଓ ବହୁକର୍ମଶାଳା ଆୟୋଜନ କରୁଅଛି ।

**● ଧର୍ମଶାଳା ବ୍ଲକ୍ ଅଞ୍ଚଳରେ କାର୍ଯ୍ୟ କରୁଥିବା ଯେଉଁ ୧୨ ଟି ସ୍ୱେଚ୍ଛାସେବୀ ସଂଗଠନ, ସେଗୁଡ଼ିକ ହେଲା :-**

**ଚିରବିନୋଦନ କେନ୍ଦ୍ର** :- ଏହି ସ୍ୱେଚ୍ଛସେବୀ ସଂଗଠନଟି ପ୍ରାୟତଃ ୧୯୯୨-୯୩ ମସିହାରେ ଧର୍ମଶାଳା ବ୍ଲକ୍‌ର ମିର୍ଜାପୁର ଅଞ୍ଚଳରେ ସ୍ଥାପିତ ହୋଇ ମୁଖ୍ୟତଃ ପରିବେଶ ସୁରକ୍ଷା କର୍ମଶାଳା, ବୃକ୍ଷରୋପଣ ଓ ଗ୍ରାମାଞ୍ଚଳର ବିକାଶ ପାଇଁ କାର୍ଯ୍ୟ କରୁଛି ।



Digitized by PPRACHIN, SOA

ବୃକ୍ଷରୋପଣ କ୍ଷେତ୍ରରେ ଅଗ୍ରଣୀ ଭୂମିକା ପାଇଁ ଏହି ସଂସ୍ଥା ସରକାରଙ୍କଠାରୁ ପ୍ରକୃତି ମିତ୍ର ପୁରସ୍କାର ପାଇଛି ।

**ପଲ୍ଲିଶ୍ରୀ :-** ଏହା ୧୯୮୭-୮୮ ରୁ ନରସିଂହପୁର ଅଞ୍ଚଳରେ ସ୍ଥାପିତ ହୋଇ ଅଦ୍ୟାବଧୀ ଗ୍ରାମ୍ୟ ପରିମଳ, ଗ୍ରାମାଞ୍ଚଳରେ ଗୋବରଗ୍ୟାସ ବସାଇବା ପାଇଁ ପ୍ରଚେଷ୍ଟା ଓ ଶିଶୁ ଶ୍ରମିକମାନଙ୍କ ପାଇଁ ବିଭିନ୍ନ ପ୍ରକାର କାର୍ଯ୍ୟ ହାତକୁ ନେଇଛି ।

**ବିଣାପାଣି ଯୁବ ପରିଷଦ :-** ୧୯୮୯-୯୦ ମସିହାରୁ ଏହା ଧର୍ମଶାଳା ବ୍ଲକର ମହିସରା ଅଞ୍ଚଳରେ ସ୍ଥାପିତ ହୋଇଛି । ଏହା ମୁଖ୍ୟତଃ ଗ୍ରାମାଞ୍ଚଳର ଯୁବକମାନଙ୍କୁ ସଂଗଠିତ କରାଇ ସମାଜର ବିଭିନ୍ନ ଜନହିତକର କାର୍ଯ୍ୟରେ ବିନିଯୋଗ କରାଇଛି ।

**ବୁଢ଼ୀ ଯାଗୁଳାଇ ୟୁଥ କ୍ଲବ୍ :-** ଏହା ୧୯୯୩-୯୪ ମସିହାରେ କଣ୍ଡିଗଡ଼ିଆ ଅଞ୍ଚଳରେ ସ୍ଥାପିତ ହୋଇ ସ୍ଥାନୀୟ ଯୁବକ, ଯୁବତୀମାନଙ୍କୁ ସ୍ୱାବଲମ୍ବି କରାଇବା ପାଇଁ ବିଭିନ୍ନ ଧନ୍ଦାମୂଳକ ଶିକ୍ଷାଦାନ କରୁଛି ।

**ସେବା ସମିତି :-** ଏହି ସ୍ୱେଚ୍ଛାସେବୀ ସଂଗଠନଟି ବିଗତ ୧୯୫୯-୬୦ ମସିହାରୁ ହରିଦାସପୁରଠାରେ ସ୍ଥାପତ ହୋଇ ଜନସେବାରେ ନିୟୋଜିତ ରହିଛି । ଏହା ନାରୀ ଓ ଶିଶୁ ବିକାଶ ପାଇଁ କାର୍ଯ୍ୟ କରୁଛି । ଏହି ସଂସ୍ଥା ହରିଦାସପୁରର କଦଳାଠାରେ ଏକ ଆବାସିକ ସ୍ୱାସ୍ଥ୍ୟ କେନ୍ଦ୍ର ସ୍ଥାପନ କରି ସ୍ଥାନୀୟ ଗରୀବ ଲୋକଙ୍କୁ ସ୍ୱାସ୍ଥ୍ୟ ସେବା ଯୋଗାଇ ଦେଉଛି ।

**ଲୋକ ବିକାଶ :-** ୧୯୯୧-୯୨ ମସିହାରେ ହରିଦାସପୁରଠାରେ ସ୍ଥାପିତ ହୋଇ ସ୍ୱାସ୍ଥ୍ୟ ଓ ପରିବେଶ ସଂକ୍ରାନ୍ତ କାର୍ଯ୍ୟକ୍ରମମାନ କରିବାକୁ ପ୍ରୟାସୀ ଅଛି।

**ନବଦିଗନ୍ତ ଯୁବ ପରିଷଦ :-** ଏହା ୧୯୭୯-୮୦ ରେ ଜାରକା ଅଞ୍ଚଳରେ ସ୍ଥାପିତ ହୋଇ ବୃକ୍ଷରୋପଣ ଓ ସ୍ୱାସ୍ଥ୍ୟ ସେବା ଉପରେ କାର୍ଯ୍ୟ କରୁଛି ।

**ଲୋକ ଭିକାଶ :-** ଏହା ଚଣ୍ଡିଖୋଲ ଛକଠାରେ ୧୯୯୩-୯୪ ମସିହାରେ ସ୍ଥାପିତ ହୋଇ ଅଣଆନୁଷ୍ଠାନିକ ଶିକ୍ଷା ଓ ସ୍ୱାସ୍ଥ୍ୟସେବା ଉପରେ କାର୍ଯ୍ୟକ୍ରମ ହାତକୁ ନେଇଛି ।

**ଇଣ୍ଟିଗ୍ରେଟେଡ୍ ରୁରାଲ ରି କନ୍‌ଷ୍ଟ୍ରକସନ୍ ଅର୍ଗାନାଇଜେସନ୍ :-** ଏହି ସଂସ୍ଥାଟି ନୂଆପାଟଣା ଅଞ୍ଚଳରେ ୧୯୯୪-୯୫ ମସିହାରେ ପଞ୍ଜିକୃତ ହୋଇ ଶିଶୁ ସୁରକ୍ଷା ଓ ଲୋକଙ୍କ ଅର୍ଥନୈତିକ ବିକାଶ ପାଇଁ କାର୍ଯ୍ୟକ୍ରମ ହାତକୁ ନେଇଛି ।

**ପିପୁଲସ୍ ଆକସନ୍ ଫର ଲିବର୍ଟି ଆଣ୍ଡ ଇଣ୍ଟିଗ୍ରେସନ୍ :-** ଏହି ସଂସ୍ଥାଟି ୧୯୯୪-୯୫ ମସିହାରେ ନେଉଳପୁରଠାରେ ପ୍ରତିଷ୍ଠିତ ହୋଇ ଖାଦ୍ୟ ପ୍ରକ୍ରିୟାକରଣ, ଗୋବର ଗ୍ୟାସ ପ୍ଲାଣ୍ଟ ସ୍ଥାପନ ପାଇଁ ଲକ୍ଷ ରଖିଛି ।

**ପଲ୍ଲି ପ୍ରାଣ ଯୁବକ ସଂଘ :-** କଦମପାଳଠାରେ ୧୯୭୫-୭୬ ମସିହାରୁ ସ୍ଥାପିତ ହୋଇ ଅଦ୍ୟାବଧି ସମନ୍ୱିତ ଶିକ୍ଷା କାର୍ଯ୍ୟକ୍ରମ, ଗ୍ରାମାଞ୍ଚଳର କ୍ରୀଡା ଓ ସାସ୍କୃତିକ କାର୍ଯ୍ୟ ପାଇଁ କାର୍ଯ୍ୟ କରୁଛି ।



Digitized by PPRACHIN, SOA

**ରାଜା ରାମମୋହନ ଚ୍ୟାରିଟେବୁଲ ଆସୋସିଏସନ :-** ଏହି ସଂସ୍ଥାଟି ୧୯୯୩-୯୪ ମସିହାରୁ ଧର୍ମଶାଳାର ଗଡଜାତ ଅଞ୍ଚଳ ଚଉଷଠିପଡାଠାରେ ସ୍ଥାପିତ ହୋଇ ମୁଖ୍ୟତଃ, ଗ୍ରାମାଞ୍ଚଳରେ ଅବହେଳିତ ଜନସାଧାରଣଙ୍କୁ ମାଗଣାରେ ସ୍ୱାସ୍ଥ୍ୟ ସେବା ଯୋଗାଇ ଦେବାର ପ୍ରୟାଶୀ ହୋଇଛି । ସଂସ୍ଥା ପକ୍ଷରୁ ଚଉଷଠିପଡ଼ାଗଡ଼ଠାରେ ଗୋଟିଏ ଦାତବ୍ୟ ଚିକିତ୍ସାଳୟ ଖୋଲାଯାଇଛି ।

● ରସୁଲପୁର ବ୍ଲକ୍‌ରେ କାର୍ଯ୍ୟରତ ୭ ଟି ସ୍ୱେଚ୍ଛାସେବୀ ସଂଘଠନ ହେଲା :-

**ଓଡ଼ିଶା ପ୍ରଗତି କୃଷକ ପରିଷଦ :-** ଏହା ୧୯୮୪-୮୫ ମସିହାରୁ ବାରବାଟୀଠାରେ ସ୍ଥାପିତ ହୋଇ ଅଦ୍ୟାବଧି କୃଷକମାନଙ୍କ ଉନ୍ନତି ପାଇଁ ଓ କୃଷିର ଉନ୍ନତି ପାଇଁ କୃଷକ ମାନଙ୍କୁ ସଂଗଠିତ କରି କାର୍ଯ୍ୟ କରୁଛି ।

**ପଲ୍ଲିଚେତନା :-** ଏହି ସଂସ୍ଥାଟି କଲଣଠାରେ ୧୯୯୧-୯୨ ମସିହାରେ ସ୍ଥାପିତ ହୋଇ ମୁଖ୍ୟତଃ ଶିକ୍ଷାର ବିକାଶ ଓ ଗ୍ରାମାଞ୍ଚଳରେ ସ୍ୱାସ୍ଥ୍ୟ ସେବାରେ ସଚେତନତା ସୃଷ୍ଟି ପାଇଁ କାର୍ଯ୍ୟ କରୁଛି ।

**ସ୍ୱପ୍ନେଶ୍ୱର ୟୁଥ କ୍ଲବ :-** ଏହା ବଂଧଡିହ ଅଞ୍ଚଳରେ ୧୯୯୫-୯୬ ମସିହାରେ ସ୍ଥାପିତ ହୋଇ ଗ୍ରାମାଞ୍ଚଳରେ ଶିକ୍ଷା ଓ ସ୍ୱାସ୍ଥ୍ୟସେବା ପାଇଁ କାର୍ଯ୍ୟ କରୁଛି ।

**ୟାସିକା (YASHICA) :-** ଏହା କାବୁଡ଼ିକୁଦଠାରେ ୧୯୯୪-୯୫ ମସିହାରେ ସ୍ଥାପିତ ହୋଇ ଗ୍ରାମାଞ୍ଚଳରେ ଯୁବକମାନଙ୍କୁ ସମାଜ ସେବା କ୍ଷେତ୍ରରେ ତାଲିମ ଦେବା ସହ ସ୍ୱାବଲମ୍ବି କରାଇବା ପାଇଁ କାର୍ଯ୍ୟ କରୁଛି ।

**ମହାଲକ୍ଷ୍ମୀ ପାଠାଗାର :-** ଗୋପିନାଥ ପୁରଠାରେ ୧୯୮୧-୮୨ ମସିହାରେ ସ୍ଥାପିତ ହୋଇ ଏହି ଅଞ୍ଚଳରେ ନାରୀ ଶିକ୍ଷା ଓ ନାରୀ ସୁରକ୍ଷା କ୍ଷେତ୍ରରେ କାର୍ଯ୍ୟ କରୁଛି ।

**ଜନସେବା :-** ଏହି ସଂସ୍ଥାଟି ୧୯୮୯-୯୦ ମସିହାରେ ଗୋଲକୁଣ୍ଡଠାରେ ପଞ୍ଜିକୃତ ହୋଇ ପରିବେଶ ସୁରକ୍ଷା ଓ ବୃକ୍ଷରୋପଣ କାର୍ଯ୍ୟ ହାତକୁ ନେଇଛି ।

**ଜୟନ୍ତି ପାଠାଗାର :-** ଏହି ସ୍ୱେଚ୍ଛାସେବୀ ସଂଗଠନଟି ବିଗତ ୧୯୬୬-୬୭ ରୁ ରସୁଲପୁର ବ୍ଲକର ସାହାପଡ଼ାଠାରେ ସ୍ଥାପିତ ହୋଇ ଅଦ୍ୟାବଧି ନାରୀ ଜାଗରଣ ଓ ଶିଶୁ ବିକାଶ କାର୍ଯ୍ୟକ୍ରମମାନ କରୁଅଛି ।

**● ବଡ଼ଚଣା ବ୍ଲକ୍‌ରେ ଯେଉଁ ୧୨ଟି ସ୍ୱେଚ୍ଛାସେବୀ ସଂଗଠନ କାର୍ଯ୍ୟ କରୁଛନ୍ତି ସେମାନେ ହେଲେ :-**

**କାର୍ତ୍ତିକେୟ ପୁସ୍ତକାଗାର :-** ଏହି ସଂସ୍ଥାଟି ପ୍ରାୟତଃ ୧୯୯୦-୯୧ ମସିହାରେ ସୁଙ୍ଗୁଡାଠାରେ ସ୍ଥାପିତ ହୋଇ ଗ୍ରାମାଞ୍ଚଳରେ ଶିକ୍ଷାର ପ୍ରସାର ପାଇଁ କାର୍ଯ୍ୟ କ୍ରମ ହାତକୁ ନେଇଛି ।

**ଗୋପବନ୍ଧୁ ୟୁଥ କ୍ଲବ :-** ୧୯୭୮-୭୯ ମସିହାରୁ କଣ୍ଡିଗଡିଆ ଅଞ୍ଚଳରେ ସ୍ଥାପିତ ହୋଇ ଲୋକମାନଙ୍କ ପାଇଁ ସ୍ୱାସ୍ଥ୍ୟ ସେବା ଓ ଶିକ୍ଷା କ୍ଷେତ୍ରରେ ସଚେତନତା ସୃଷ୍ଟି କରିବାର ଲକ୍ଷ ରଖିଛି ।



Digitized by PPRACHIN, SOA

**ଆଜାଦ ହିନ୍ଦ ପାଠାଗାର :-** ଏହା ୧୯୮୦-୮୧ ମସିହାରୁ ବଡ଼ଚଣା ବ୍ଲକର ସାହାପଡ଼ାଠାରେ ସ୍ଥାପିତ ହୋଇଛି । ପରିବେଶ ସୁରକ୍ଷିତ ସମନ୍ୱିତ ଶିକ୍ଷା କ୍ଷେତ୍ରରେ କାର୍ଯ୍ୟ କରୁଛି ।

**ସେଣ୍ଟର ଫର ରୁରାଲ ଡେଭଲପମେଣ୍ଟ :-** ଏହା ୧୯୯୫-୯୬ ମସିହାରେ କୋଇସାହିଠାରେ ସ୍ଥାପିତ ହୋଇଛି । ମୁଖ୍ୟତଃ ଗ୍ରାମାଞ୍ଚଳର ବିକାଶ କ୍ଷେତ୍ରରେ ଶିକ୍ଷା ଓ ସ୍ୱାସ୍ଥ୍ୟ ସଂପର୍କରେ ସଚେତନତା ସୃଷ୍ଟି କରିବା ସହ ବୃଦ୍ଧ ବୃଦ୍ଧାମାନଙ୍କ ପାଇଁ କାର୍ଯ୍ୟ କରୁଛି ।

**କଲଚରାଲ ହେରିଟେଜ୍ ଆଣ୍ଡ ଓରିଏଣ୍ଟାଲ ଆର୍ଟ :-** ୧୯୯୫-୯୬ ମସିହାଠାରୁ ନାଗର ପାଟଣାଠାରେ ପଞ୍ଜିକୃତ ହୋଇ ନାରୀ ଓ ଶିଶୁମାନଙ୍କ ପାଇଁ କାର୍ଯ୍ୟା କରୁଛି ।

**ନେସ୍‌ନାଲ ଇନ୍‌ଷ୍ଟିଚିଉଟ୍ ଫର ଇଣ୍ଟିଗ୍ରେଟେଡ ଡେଭେଲପମେଣ୍ଟ :-** ଏହି ସଂସ୍ଥାଟି ଗତ ୧୯୮୯-୯୦ ମସିହାରେ କଳକଳାଠାରେ ସ୍ଥାପିତ ହୋଇ ପରିବେଶ ଓ ସ୍ୱାସ୍ଥ୍ୟ ଉପରେ କାର୍ଯ୍ୟ କରିବାକୁ ପ୍ରୟାସୀ ଅଛି ।

**ସତ୍ୟନାରାୟଣ କଲଚରାଲ ଆସୋସିଏସନ :-** ୧୯୮୨-୮୩ ମସିହାରେ ଖଇରା-ଠାରେ ପଞ୍ଜିକୃତ ହୋଇ ସମାଜର ମଙ୍ଗଳ ପାଇଁ ପରିବେଶ ସୁରକ୍ଷା ଓ ସାଂସ୍କୃତିକ ଚେତନାର ବିକାଶ ପାଇଁ କାର୍ଯ୍ୟ କରୁଛି ।

**ଉତ୍କଳ ଆସୋସିଏସନ ଫର ସୋସିଆଲ ସରଭିସ :-** ଏହା ପୁରୁଷୋତ୍ତମପୁର-ଠାରେ ୧୯୯୬-୯୭ରେ ସ୍ଥାପିତ ହୋଇ ଯୁବ ସମାଜ ଓ ଯୁବ ଗୋଷ୍ଠିଙ୍କ ପାଇଁ କାର୍ଯ୍ୟ କରୁଛି ।

**ଉତ୍କଳ ଗୌରବ ସୋସାଇଟି :-** ଏହା ଚଣ୍ଡିଖୋଲ ଛକଠାରେ ୧୯୯୦-୯୧ରେ ସ୍ଥାପିତ ହୋଇ ଗ୍ରାମାଞ୍ଚଳର ଉନ୍ନତି ପାଇଁ ଶିକ୍ଷା ଓ ସ୍ୱାସ୍ଥ୍ୟ ସଂପର୍କରେ କାର୍ଯ୍ୟ କରିବାକୁ ଲକ୍ଷ ରଖିଛି ।

**ବିଶ୍ୱକଲ୍ୟାଣ ସେବକ ସମାଜ :-** ଏହି ସଂସ୍ଥାଟି ୧୯୯୨-୯୩ ମସିହାରେ ବଡ଼ଚଣାଠାରେ ପଞ୍ଜିକୃତ ହୋଇ ଲୋକମାନଙ୍କୁ ଶିକ୍ଷା ଓ ସ୍ୱାସ୍ଥ୍ୟସେବା ଯୋଗାଇ ଦେବା କ୍ଷେତ୍ରରେ କାର୍ଯ୍ୟ କରୁଛି ।

**ପଲ୍ଲି ମଙ୍ଗଳ ଯୁବକ ସଂଘ :-** ଏହା ୧୯୭୯-୮୦ ମସିହାରୁ ସ୍ଥାପିତ ହୋଇ ଛତିଆ ଅଞ୍ଚଳରେ ପରିବେଶ ସୁରକ୍ଷା ଓ ମାତୃମଙ୍ଗଳ କାର୍ଯ୍ୟକ୍ରମମାନ ହାତକୁ ନେଇଛି ।

**ବାପୁଜୀ କିଶୋର ଶ୍ରୋତା ଚକ୍ର :-** ଏହି ସଂସ୍ଥାଟି ୧୯୬୯ ମସିହାରୁ ଭାକୁଡ ଗ୍ରାମରେ ପ୍ରତିଷ୍ଠିତ ହୋଇ ଶିଶୁ କଲ୍ୟାଣ, ସାଂସ୍କୃତିକ ବିକାଶ, ଶିଶୁ ସାହିତ୍ୟର ଅଭିବୃଦ୍ଧି, କ୍ରୀଡାର ବିକାଶ ନିମନ୍ତେ କାର୍ଯ୍ୟକରିବା ସଙ୍ଗେ ସଙ୍ଗେ ଏହି ଅନୁଷ୍ଠାନ ପକ୍ଷରୁ ଶିଶୁ କିଶୋର ପତ୍ରିକା କିଶୋର ଜ୍ୟୋତି ପ୍ରକାଶିତ ହୋଇଛି ।



Digitized by PPRACHIN, SOA

**ପ୍ରିୟ (PRIYA)** :- ଏହି ସଂସ୍ଥାଟି ବଡ଼ଚଣା ବ୍ଲକ୍‌ର କୋହ୍ଲାଠାରେ ୧୯୯୪-୯୫ ମସିହାରେ ସ୍ଥାପିତ ହୋଇ ପ୍ରାକୃତିକ ଶକ୍ତିର ବିନିଯୋଗ ପାଇଁ କର୍ମଶାଳା ଓ ଗ୍ରାମାଞ୍ଚଳରେ ଗୋବର ଗ୍ୟାସ ପ୍ଲାଣ୍ଟ ବସାଇବା ପାଇଁ ସଚେତନତା ସୃଷ୍ଟି କରୁଛି ।

**● ଯାଜପୁର ରୋଡ୍ ପୌର ପରିଷଦ ଅଞ୍ଚଳରେ କାର୍ଯ୍ୟ କରୁଥିବା ଦୁଇଟି ସଂସ୍ଥା ହେଉଛି :-**

**ଉମାରାଣୀ ଇନ୍‌ଷ୍ଟିଚିଉଟ୍** :- ଏହା ୧୯୯୫-୯୬ ମସିହାରେ ସ୍ଥାପିତ ହୋଇ ମହିଳାମାନଙ୍କୁ ଆତ୍ମନିର୍ଭରଶିଳ କରାଇବା ପାଇଁ ଧନ୍ଦା ମୂଳକ ତାଲିମ୍ ଓ ବୈଷୟିକ ତାଲିମ କାର୍ଯ୍ୟକ୍ରମମାନ ହାତକୁ ନେଇଛି । ପୌରାଞ୍ଚଳରେ ଏହାର ଗୋଟିଏ ଶିକ୍ଷାଦାନ କେନ୍ଦ୍ର ଖୋଲାଯାଇଛି ।

**ଜୁଭେନାଇଲ କ୍ଲବ** :- ଏହା ୧୯୮୯-୯୦ ମସିହାରେ ରାଛିପୁରଠାରେ ସ୍ଥାପିତ ହୋଇ ପୌର ପରିଷଦ ଅଞ୍ଚଳରେ ପ୍ରାଥମିକ ଶିକ୍ଷାକୁ ସାର୍ବଜନୀନ କରିବା ପାଇଁ ସଂଗ୍ରାମ କରିବା ସହ ସମାଜରୁ ଯୌତୁକ ପ୍ରଥା ଉଚ୍ଛେଦ ପାଇଁ ସଂଗ୍ରାମ କରୁଛି ।

**● ଯାଜପୁର ପୌର ପରିଷଦ ଅଞ୍ଚଳରେ କାର୍ଯ୍ୟ କରୁଥିବା ୨ଟି ସ୍ୱେଚ୍ଛାସେବୀ ସଂଗଠନ ହେଉଛି :-**

**ଦି ନିର୍ମାଣ** :- ୧୯୯୨-୯୩ ମସିହାରେ ସ୍ଥାପିତ ହୋଇ ମେଦୁଆକୁଳ ଅଞ୍ଚଳର ବସ୍ତିବାସିନ୍ଦାମାନଙ୍କ ପାଇଁ ସ୍ୱାସ୍ଥ୍ୟ, ଶିକ୍ଷା ଓ ପରିବେଶ ସୁରକ୍ଷା ପାଇଁ କାର୍ଯ୍ୟ କରୁଛି ।

**ଧୃତୀ** :- ଏହା ୧୯୯୫-୯୬ ମସିହାରୁ ପଞ୍ଜିକୃତ ହୋଇ ଅମିରବାଗ ଅଞ୍ଚଳରେ କାର୍ଯ୍ୟ କରୁଛି । ଏହା ମୁଖ୍ୟତଃ ବସ୍ତିବାସିନ୍ଦାଙ୍କୁ ସ୍ୱାସ୍ଥ୍ୟ କ୍ଷେତ୍ରରେ ସଚେତନତା ପାଇଁ କର୍ମଶାଳାମାନ ଆୟୋଜନ କରିଛି ଓ ପରିବେଶ ସୁରକ୍ଷା ଦିଗରେ କାର୍ଯ୍ୟ କରୁଛି ।

ଆମ ଜିଲ୍ଲାରେ କାର୍ଯ୍ୟ କରୁଥିବା ଉପରୋକ୍ତ ସ୍ୱେଚ୍ଛାସେବୀ ସଂଗଠନ ଗୁଡ଼ିକ ମଧ୍ୟରୁ ଦୁଇ ଚାରିଟି ସଂସ୍ଥାକୁ ବାଦ ଦେଲେ ଅନ୍ୟ ସମସ୍ତ ସଂସ୍ଥା ପ୍ରତ୍ୟକ୍ଷ ପରୋକ୍ଷ ବିବେଚିତ ଭାବରେ ସରକାରୀ ସାହାଯ୍ୟ ପାଇଁ କାର୍ଯ୍ୟ କରୁଛନ୍ତି । ଉପଯୁକ୍ତ ବିବେଚିତ ସଂସ୍ଥାମାନଙ୍କୁ ମଧ୍ୟ ଜିଲ୍ଲାନ୍ତରରୁ ସାହାଯ୍ୟ ମିଳୁଛି ।





ସୌଜନ୍ୟ
**ବେଣୁଧର ପଣ୍ଡା**
ଗୋଡ଼ିପାଟିଆ, ଚଢ଼େଇଧରା,
ଯାଜପୁର



Digitized by PPRACHIN, SOA

# ଯାଜପୁର ଜିଲ୍ଲାର
# ପ୍ରମୁଖ ସାଂସ୍କୃତିକ ସଂଗଠନ 'ଅଖିଳଚକ୍ର'

ରାଜ୍ୟସ୍ତରୀୟ ସାଂସ୍କୃତିକ ଓ ସାରସ୍ୱତ ସଂଗଠନ 'ଅଖିଳଚକ୍ର' ଯାଜପୁର ଜିଲ୍ଲାରେ ୧୯୭୦ ମସିହାରୁ ଅଦ୍ୟାବଧି ବିଭିନ୍ନ କ୍ଷେତ୍ରରେ ଉଲ୍ଲେଖନୀୟ କାର୍ଯ୍ୟକରି ଆସୁଅଛି । ଏହି ସଂଗଠନଟି ବିଶ୍ୱ ମାନବିକ ଐକ୍ୟ ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ । ଦୁଇ ହଜାରରୁ ଊର୍ଦ୍ଧ୍ୱ ସାଧାରଣ ସଭ୍ୟ ବ୍ୟତୀତ ୫୧ ଜଣ କାର୍ଯ୍ୟକାରୀ ସଦସ୍ୟ ଏହି ସଂଗଠନରେ ଅନ୍ତର୍ଭୁକ୍ତ ହୋଇ ପାରିଛନ୍ତି । ଏହି ମୂଳ ସଂଗଠନଟିକୁ ୪ଟି ଶାଖାରେ ବିଭକ୍ତ କରାଯାଇଛି ।

ଏପର୍ଯ୍ୟନ୍ତ ୬୦ରୁ ଊର୍ଦ୍ଧ୍ୱ ପ୍ରତିଭାଧରଙ୍କୁ ମାନପତ୍ର ସମ୍ମାନ ଆଦି ପ୍ରଦାନ କରାଯାଇ ସଂବର୍ଦ୍ଧିତ କରିଆସିଛି । ରାଜ୍ୟସ୍ତରରେ ଶ୍ରୀ ଭଗବାନ ନାୟକ ବର୍ମା, ପଣ୍ଡିତ ବିନୋଦ ବିହାରୀ ନାୟକ ଓ ଭାଗବତ ପ୍ରସାଦ ଦାଶ ନେତୃତ୍ୱ ନେଇଥିବା ବେଳେ ଏହାର ପ୍ରାଣ ପ୍ରତିଷ୍ଠାତା ବା ପ୍ରତିଷ୍ଠାନର ସଂପାଦକ ଅଛନ୍ତି ଶ୍ରୀ ହରେକୃଷ୍ଣ ପଣ୍ଡା ।

ବିଭିନ୍ନ ସମୟରେ ଯାଜପୁରର ବରପୁତ୍ର ଉତ୍କଳପ୍ରାଣ ବ୍ରଜସୁନ୍ଦର ଦାସ, ଆଦିନେତା ବିଚିତ୍ରା ନନ୍ଦ ଦାସ, ନାରୀ କବି ନିର୍ମଳା ଦେବୀ, କବି ଅଭିମନ୍ୟୁ ସାମନ୍ତ ସିଂହାର ପ୍ରମୁଖ ପ୍ରତିଭାଧାରୀଙ୍କୁ ପୂଜ୍ୟ ପୂଜା ଭିତ୍ତିରେ ନିରବଚ୍ଛିନ୍ନ ଭାବେ ସ୍ମୃତିଚାରଣ କରି ଆସୁଛି । ଗ୍ରାମାଞ୍ଚଳ ଭିତ୍ତିରେ ପ୍ରତିଭାବାନ ବ୍ୟକ୍ତିଙ୍କୁ ସ୍ୱୀକୃତି ତଥା ସମ୍ବର୍ଦ୍ଧନା ଜଣାଇବା ଦିଗରେ ଏଇକେଇ ବର୍ଷ ହେବ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଆସିଛି ।

ସମାଜରେ ସାଂସ୍କୃତିକ ଅଭ୍ୟୁଥାନ ନିମନ୍ତେ ଉଦ୍ୟମ ଶୀଳ ହେବା ସହ, ସାରସ୍ୱତ ସୃଷ୍ଟି ଓ ପଚାର ପ୍ରସାରକୁ ସର୍ବଦା ଅଗ୍ରାଧିକାର ଦେଇ ଆସିଛି । ଏହି ସଂଗଠନଟିର ମୁଖ୍ୟ କାର୍ଯ୍ୟାଳୟ ଯାଜପୁର ଜିଲ୍ଲାର ବିଂଝାରପୁର ଥାନା ଅନ୍ତର୍ଗତ ମୁଛନ୍ଦପୁର ଗ୍ରାମରେ ଅବସ୍ଥିତ ।

❐ ❐ ❐



ସଂଗ୍ରାହକ :
**ସେଖ ମୁଜଫର ରହେମନ**
ସମ୍ବାଦ ପ୍ରତିନିଧିବ, ବିଂଝାରପୁର



Digitized by PPRACHIN, SOA

# ଯାଜପୁର ଜିଲ୍ଲା ପୁଲିସ ପ୍ରଶାସନ

ଯାଜପୁର ପୁଲିସ ଜିଲ୍ଲା ଗଠନ : ତା. ୧.୦୪.୧୯୯୩ ତାରିଖ

ସଦର କାର୍ଯ୍ୟାଳୟର ଅବସ୍ଥିତି : ପାଣିକୋଇଲି (ଯଯାତି ନଗର)

ନିଜସ୍ୱ କୋଠା ଅଛି ନା'ନାହିଁ : ନାହିଁ

କାର୍ଯ୍ୟାଳୟ କେଉଁଠାରେ ଚାଲିଛି : ଭଡ଼ା ଘର ଓ ଏନ.ଏଚ. ବଙ୍ଗଳାରେ

**ସଦର ପ୍ରଶାସନର ମୁଖ୍ୟ : ପଦବୀ ସଂଖ୍ୟା**

| | ପଦବୀ | ସଂଖ୍ୟା |
|---|---|---|
| (୧) | ଏସ.ପି. | ୧ |
| (୨) | ଅତିରିକ୍ତ ଏସ.ପି | ୧ |
| (୩) | ଡ଼ି.ଏସ.ପି. | ୨ |
| (୪) | ଏସ.ଡି.ପି.ଓ | ୧ |

**ସଦର କାର୍ଯ୍ୟାଳୟ ଟେଲିଫୋନ ନମ୍ବର : (ଏସ୍.ଟି.ଡ଼ି) : ୦୬୭୨୬**

| | |
|---|---|
| ଅଫିସ୍ | : ୪୦୧୧୨ |
| ଘର | : ୪୦୧୦୪ |
| ଘର ଫାକ୍ସ | : ୪୦୧୧୦ |
| ଡି.ଆଇ.ବି | : ୪୦୨୫୦ |
| ରିଜର୍ଭ ଅଫିସ | : ୪୦୧୦୫ |
| ଏସ.ଡି.ପି.ଓ | : (୦୬୭୨୮) ୨୦୦୪୨ |

**ସଦର କାର୍ଯ୍ୟାଳୟର ପଦପଦବୀ :**

| | ଇନ୍ସପେକ୍ଟର | ଏସ.ଆଇ. | ଏ.ଏସ.ଆଇ | କନେଷ୍ଟବଳ |
|---|---|---|---|---|
| ଡ଼ି.ଆଇ.ବି | ୦୧ | ୦୧ | ୦୧ | ୦୩ |
| ପି.ସି.ଆର.ସେଲ | ୦୧ | ୦୧ | ୦୧ | ୦୧ |
| ଅଭିଯୋଗ ପ୍ରକୋଷ୍ଠ | ୦୧ | * | * | ୦୧ |
| ଜି.ଆର.ସେଲ | * | ୦୧ | ୦୧ | * |
| ଡି.ସି.ଆର.ବି. | * | * | ୦୧ | ୦୧ |



Digitized by PPRACHIN, SOA

ମୋଟ ପୁଲିସ ଗାଡ଼ି ସଂଖ୍ୟା : ୩୪
ମୋଟ ଥାନା ସଂଖ୍ୟା : ୧୧
ମୋଟ ଫାଣ୍ଡି ସଂଖ୍ୟା : ୧୪
ମୋଟ ବିଟ୍ ହାଉସ : ୦୨

| ଥାନା ଗୁଡ଼ିକର ନାମ | | : | ଟେଲିଫୋନ ନମ୍ବର |
|---|---|---|---|
| ୧) | କୋରେଇ | : | (୦୬୭୨୬) ୨୦୨୩୫ |
| ୨) | ଯାଜପୁର ରୋଡ଼ | : | (୦୬୭୨୬) ୨୦୩୩୩ |
| ୩) | ସୁକିନ୍ଦା | : | (୦୬୭୨୬) ୪୪୪୨୯ |
| ୪) | ଡୁବୁରି | : | (୦୬୭୨୬) ୪୫୭୨୦ |
| ୫) | ଟମକା | : | (୦୬୭୨୬) ୪୩୩୩୮ |
| ୬) | ବଡ଼ଚଣା | : | (୦୬୭୨୫) ୨୧୦୦ |
| ୭) | ଧର୍ମଶାଳା | : | (୦୬୭୨୫) ୭୮୪୫୦ |
| ୮) | ବାଲିଚନ୍ଦ୍ରପୁର | : | (୦୬୭୧) ୨୫୮୭୪୫ |
| ୯) | ଯାଜପୁର | : | (୦୬୭୨୮) ୨୦୨୪୪ |
| ୧୦) | ବିଂଝାରପୁର | : | (୦୬୭୨୮) ୮୩୩୩ |
| ୧୧) | ମଙ୍ଗଳପୁର | : | |

| | ଫାଣ୍ଡିର ନାମ | ଫୋନ ନମ୍ବର | କେଉଁଥାନା ଅଧିନରେ ଅବସ୍ଥିତ |
|---|---|---|---|
| ୧. | ପାଣିକୋଇଲି | ୦୬୭୨୬-୪୦୧୪୯ | କୋରେଇ |
| ୨. | ଯାଜପୁର ରୋଡ (ଟାଉନ ଫାଣ୍ଡି) | ** | ଯାଜପୁର ରୋଡ |
| ୩. | କାଳିଆପାଣି | ୦୬୭୨୬-୬୮୭୮୦ | ଟମକା |
| ୪. | ବୈରୀ | ** | ବଡ଼ଚଣା |
| ୫. | ଧାନମଣ୍ଡଳ | ୦୬୭୨୫-୨୦୨୯ | ବଡ଼ଚଣା |
| ୬. | ଚଣ୍ଡୀଖୋଲ | ୦୬୭୨୫-୨୦୨୮ | ବଡ଼ଚଣା |
| ୭. | ବ୍ରହ୍ମବରଦା | ** | ଧର୍ମଶାଳା |
| ୮. | ଜେନାପୁର | ** | ଧର୍ମଶାଳା |
| ୯. | କୁଆଖିଆ | ୦୬୭୨୫-୭୮୭୮୨ | ଧର୍ମଶାଳା |
| ୧୦. | ବରୁଁହା | ** | ଯାଜପୁର |
| ୧୧. | ଯାଜପୁର ଟାଉନ ଫାଣ୍ଡି | ** | ଯାଜପୁର |
| ୧୨. | ବିରଜା ମନ୍ଦିର ଫାଣ୍ଡି | ** | ଯାଜପୁର |



Digitized by PPRACHIN, SOA

| | | |
|---|---|---|
| ୧୩. ଜରି ବିଟହାଉସ | ❁❁ | ବିଂଝାରପୁର |
| ୧୪. ଅଳକୁଣ୍ଡ | ❁❁ | ବିଂଝାରପୁର |
| ୧୫. ବରୀ | ❁❁ | ବିଂଝାରପୁର |
| ୧୬. ଜୟନ୍ତରା ବିଟହାଉସ | ❁❁ | ମଙ୍ଗଳପୁର |

**ପାଣିକୋଇଲି ରିଜର୍ଭ ଅଫିସ୍ :**

| | |
|---|---|
| ଆର.ଆଇ | ୦୧ |
| ସରଜେଣ୍ଟ | ୦୨ |
| ଡ୍ରିଲ ଏସ.ଆଇ | ୦୨ |
| ହାବିଲଦାର ମେଜର | ୦୩ |
| ହାବିଲଦାର | ୧୮ |
| ନାୟକ | ୦୭ |
| ଲାନ୍ସ ନାୟକ | ୦୭ |
| ଏ.ପି.ଆର କନେଷ୍ଟବଲ | ୧୨୩ |
| ସହକାରୀ ଆର୍ମର | ୦୨ |
| ଡ୍ରାଇଭର ହାବିଲଦାର | ୦୬ |
| ସହକାରୀ ଡ୍ରାଇଭର | ୧୯ |
| ରିଜର୍ଭ ଏ.ଏସ.ଆଇ | ୦୧ |

**କୋର୍ଟ ଅଫିସ୍ :** ୨ଟି
୧) ଯାଜପୁର
୨) ଯାଜପୁର ରୋଡ୍

**ସର୍କଲ ଇନ୍ସପେକ୍ଟର :** ୨ଟି
(୧) ଯାଜପୁର
(୨) ଯାଜପୁର ରୋଡ୍

❒ ❒ ❒



ସୌଜନ୍ୟ
**ଶ୍ରୀ ରବି ମିଶ୍ର,**
ସର୍କଲ ଇନ୍ସପେକ୍ଟର,
ଯାଜପୁର ରୋଡ



Digitized by PPRACHIN, SOA

# ଯାଜପୁର ଜିଲ୍ଲାର ବ୍ୟାଙ୍କ ସମୂହ ଓ ଅର୍ଥନୀତି

ଯାଜପୁର ଜିଲ୍ଲାର ସର୍ବମୋଟ ୫୨ଟି ଜାତୀୟ କରଣ ବ୍ୟାଙ୍କ ରହିଛି ସେଗୁଡ଼ିକ ମଧ୍ୟରେ ରହିଛି :

ଭାରତୀୟ ଷ୍ଟେଟ ବ୍ୟାଙ୍କ–୯ଟି, ୟୁନାଇଟେଡ୍ କମର୍ସିଆଲ ବ୍ୟାଙ୍କ–୭ଟି ଆହ୍ଲାବାଦ ବ୍ୟାଙ୍କ–୬ଟି, ଆନ୍ଧ୍ରା ବ୍ୟାଙ୍କ–୫ଟି, ୟୁନାଇଟେଡ୍ ବ୍ୟାଙ୍କ ଅଫ ଇଣ୍ଡିଆ–୪ଟି, ଇଣ୍ଡିଆନ ବ୍ୟାଙ୍କ–୪ଟି, ୟୁନିଅନ ବ୍ୟାଙ୍କ ଅଫ୍ ଇଣ୍ଡିଆ–୪ଟି, ସେଣ୍ଟ୍ରାଲ୍ ବ୍ୟାଙ୍କ ଅଫ ଇଣ୍ଡିଆ–୪ଟି, ଇଣ୍ଡିଆନ ଓଭରସିଜ୍ ବ୍ୟାଙ୍କ–୩ଟି, ବ୍ୟାଙ୍କ ଅଫ୍ ଇଣ୍ଡିଆ–୨ଟି, କାନାଡା ବ୍ୟାଙ୍କ–୨ଟି, ପଞ୍ଜାବ ନ୍ୟାସ୍‌ନାଲ ବ୍ୟାଙ୍କ-୨ ।

**ଭାରତୀୟ ଷ୍ଟେଟବ୍ୟାଙ୍କ :**

ବାଲିଚନ୍ଦ୍ରପୁର – ୦୬୭୧–୨୫୮୬୨୩, ଅଙ୍ଗାଲୋ – ୦୬୭୨୮–୮୭୪୨, ବୈରୀ – ୦୬୭୨୫–୭୮୨୨୪, ହାତୀବାରି, ଯାଜପୁର ରୋଡ – ୦୬୭୨୬–୨୦୩୦୫, ଯାଜପୁର ଟାଉନ – ୦୬୭୨୮–୨୦୦୩୬, କଳିଙ୍ଗ ନଗର – ୦୬୭୨୬–୮୯୪୯, କାଇପଡ଼ା, ସୁକିନ୍ଦା – ୦୬୭୨୬–୮୫୨୭ ।

**ୟୁନାଇଟେଡ୍ କମର୍ସିଆଲ ବ୍ୟାଙ୍କ :**

ଅବଦଲପୁର, କିଆଝରି, ବାରବାଟୀ, ମଧୁବନହାଟ, ଧର୍ମଶାଳା, ମାର୍କଣ୍ଡପୁର, ଯଖପୁରା ।

**ଆହ୍ଲାବାଦ ବ୍ୟାଙ୍କ :**

ଆରୁହା, ମଙ୍ଗଳପୁର, ଚକ୍ରଧରପୁର, ମୀର୍ଜାପୁର, ଯାଜପୁର ରୋଡ୍, ପୂର୍ବକୋଟ ।

**ଆନ୍ଧ୍ର ବ୍ୟାଙ୍କ :**

ବନ୍ଧାଲୋ, ବରୁହାଁ, ବ୍ରାହ୍ମଣୀପାଳ, ଯାଜପୁର ରୋଡ୍, କାଳିଆପାଣି ।

**ୟୁନାଇଟେଡ୍ ବ୍ୟାଙ୍କ ଅଫ ଇଣ୍ଡିଆ :**

ଚଣ୍ଡୀଖୋଲ, ଛତ୍ରପଡା ଛକ, କନିକା ପଡ଼ା, ଟାଉନତାରା (ତାଉଁତାରା) ।

**ଇଣ୍ଡିଆନ ବ୍ୟାଙ୍କ :**

ଆକୁଲା, ବାଲିଆପାଳ, ନାଥସାହି, ସାଉଡିଆ

**ସେଣ୍ଟ୍ରାଲ ବ୍ୟାଙ୍କ ଅଫ୍ ଇଣ୍ଡିଆ :**

ବିଂଝାରପୁର, ଯାଜପୁର ରୋଡ୍, ନେଉଳପୁର, ପୁରୁଣା ବଉଳମାଳ ।



Digitized by PPRACHIN, SOA

**ଇଣ୍ଡିଆନ୍ ଓଭରସିଜ୍ ବ୍ୟାଙ୍କ :**

ଧାନମଣ୍ଡଳ, ଯାଜପୁର ରୋଡ଼, ମଙ୍ଗଳପୁର ।

**ବ୍ୟାଙ୍କ ଅଫ୍ ଇଣ୍ଡିଆ :**

ରଗଡ଼ି, କଣ୍ଡିଆହାଟ ।

**କାନାଡ଼ା ବ୍ୟାଙ୍କ :**

ଯାଜପୁର ରୋଡ଼, ରାମବାଗ ।

**ପଞ୍ଜାବ ନ୍ୟାସନାଲ ବ୍ୟାଙ୍କ :**

ଦର୍ପଣ, ହରିପୁର ହାଟ ।

**ୟୁନିୟନ ବ୍ୟାଙ୍କ ଅଫ ଇଣ୍ଡିଆ :**

ବାଜମୁକୁନ୍ଦି, ଯାଜପୁର ଟାଉନ, ଉଉଙ୍ଗରା ।

ଜାତୀୟ କରଣ ବ୍ୟାଙ୍କଗୁଡ଼ିକ ବ୍ୟତୀତ ସମଗ୍ର ଯାଜପୁର ଜିଲ୍ଲାରେ ରହିଛି **୩୧ଟି କଟକ ଗ୍ରାମ୍ୟ ବ୍ୟାଙ୍କ ।**

**କଟକ ଗ୍ରାମ୍ୟ ବ୍ୟାଙ୍କ ଶାଖା :-**

ବୈତରଣୀ ରୋଡ, ବଡ଼ଚଣା, ବରିମାଉଣ୍ଡ, ବିରଜା ମନ୍ଦିର, ବ୍ରହ୍ମବରଦା, ଛତିଆ, ଦାନଗଦି, ଦଶରଥପୁର, ଡୁବୁରି, ଗଡ଼ମଧୁପୁର, ଗୋପାଳପୁର, ଗୋବର୍ଦ୍ଧନପୁର, ଢେନାପୁର, କବାଟବନ୍ଧ, କମ୍ପଗଡ଼, କଳମ, କସ୍ପା, କୋରେଇ, କୋଟପୁର, କୁନ୍ଦପାଟଣା, ନଠୁଆବର, ପାଣିକୋଇଲି, ରାମଚନ୍ଦ୍ରପୁର, ରୁଡ଼ିଆ, ସମିଆ, ଶଙ୍ଖଚିଲା, ସିଂହପୁର, ସୁଜନପୁର, ସୁକିନ୍ଦା, ଉଉରକୂଳ, କୁଆଖିଆ ।

**ଜିଲ୍ଲାରେ ଥିବା ମୋଟ କେନ୍ଦ୍ରୀୟ ବ୍ୟାଙ୍କଗୁଡ଼ିକ ସଂଖ୍ୟା : ୧୦**

| ବ୍ୟାଙ୍କ ର ନାମ | ଅବସ୍ଥିତି | ଟେଲିଫୋନ୍ |
|---|---|---|
| ସି.ସି.ବି. ବଡ଼ଚଣା | ଚଣ୍ଡୀଖୋଲ | ୨୨୯୫ |
| ସି.ସି.ବି.ବାଲିଚନ୍ଦ୍ରପୁର | ବାଲିଚନ୍ଦ୍ରପୁର | |
| ସି.ସି.ବି. ରସୁଲପୁର | କୁଆଖିଆ | ୭୮୭୩୩ |
| ସି.ସି.ବି. ଧର୍ମଶାଳା | ଜାରକା | ୭୮୪୩୯ |
| ସି.ସି.ବି. ବରୀ | ରାମଚନ୍ଦ୍ରପୁର | |
| ସି.ସି.ବି. ସୁକିନ୍ଦା/ଦାନଗଦି | ଡୁବୁରି | ୮୯୨୦୩ |
| ସି.ସି.ବି. ଯାଜପୁର ରୋଡ଼ | ଯାଜପୁର ରୋଡ଼ | ୨୦୩୦୬ |
| ସି.ସି.ବି. ଯାଜପୁର ଟାଉନ | ଯାଜପୁର ଟାଉନ | ୨୦୦୧୫ |
| ସି.ସି.ବି. ଦଶରଥପୁର | ଦଶରଥପୁର | |
| ସି.ସି.ବି. ବିଂଝାରପୁର | ବିଂଝାରପୁର | |

**ଏହି ବ୍ୟାଙ୍କ ଅଧିନରେ ଥିବା ମୋଟ ମିନି ବ୍ୟାଙ୍କ ସଂଖ୍ୟା : ୧୯**

**ଜିଲ୍ଲା ମଧ୍ୟରେ କାର୍ଯ୍ୟକ୍ଷମ ମୋଟ ସେବା ସମବାୟ ସମିତି ସଂଖ୍ୟା : ୧୨୨**



Digitized by PPRACHIN, SOA

| ବ୍ଲକ | ମନିବ୍ୟାଙ୍କର ନାମ | ସେବା ସମବାୟ ସମିତି ସଂଖ୍ୟା |
| --- | --- | --- |
| ଯାଜପୁର ବ୍ଲକ୍ | ମାଳପଡା | ୧୩ |
| | ମାର୍କଣ୍ଡପୁର | |
| | ସୁଜନପୁର | |
| ଦଶରଥପୁର | ଛତ୍ରପଡା | ୧୩ |
| | ମଙ୍ଗଳପୁର | |
| | ପାଇଟପୁର | |
| ରସୁଲପୁର | ବ୍ରହ୍ମବରଦା | ୧୧ |
| ବଡ଼ଚଣା | ବଡ଼ଚଣା | ୮ + ୬ = ୧୪ |
| | ଦର୍ପଣ | |
| ଧର୍ମଶାଳା | ରେଖିଦେଇପୁର | ୧୩ |
| | ଅଭୟପୁର | |
| | ଦେଓଦା | |
| ବିଂଝାରପୁର | ପ୍ରୀତିପୁରା | ୧୫ |
| ବରୀ | ରାଜାପୁର | ୧୩ |
| | ମହାରି | |
| | ଅଙ୍ଗାଲୋ | |
| | ନହଣ | |
| | ଅମଠପୁର | |
| ଯାଜପୁର ରୋଡ୍ | ବରୁଣେଇ | ୧୮ |
| ଦାନଗଦି | ନାହିଁ | ୦୬ |
| ସୁକିନ୍ଦା | ନାହିଁ | ୦୬ |

କେନ୍ଦ୍ରୀୟ ସମବାୟ ବ୍ୟାଙ୍କଗୁଡ଼ିକରେ ଜମାରାଶି : ୧୭୬୮.୧୪ ଲକ୍ଷ
(୧୯୯୭-୯୮ ବର୍ଷରେ ମିନିବ୍ୟାଙ୍କ ମିଶି)
ମୋଟ ଋଣ ଲଗାଣ (ସେବା ସମବାୟ ସମିତି ସମେତ) : ୨୧୬୯.୩୭ ଲକ୍ଷ
ମିହଳାମାନଙ୍କୁ ଋଣ ପ୍ରଦାନ : ୦.୯୮ ଲକ୍ଷ
ଆଦିବାସୀ ହରିଜନମାନଙ୍କୁ ଋଣ ପ୍ରଦାନ : ୪୭.୫୩ ଲକ୍ଷ

କେନ୍ଦ୍ରୀୟ ସେବା ସମବାୟ ବ୍ୟାଙ୍କ ଗୁଡ଼ିକର ମୁଖ୍ୟ ଦପ୍ତର : ନିମିଚୌଡ଼ି, କଟକ,
ସଭାପତିଙ୍କ ନାମ : ଶ୍ରୀ ବିଭୂତି ଭୂଷଣ ମିଶ୍ର,
ଟେଲିଫୋନ ନଂ. : ୦୬୭୧-୬୧୯୨୧୧,
ସଂପାଦକଙ୍କ ନାମ : ଶ୍ରୀ ଚୌଧୁରୀ ବରାଦା ପ୍ରସାଦ ଦାସ,
ଟେଲିଫୋନ ନଂ. : ୦୬୭୧-୬୧୯୨୦୬।

ବ୍ୟାଙ୍କ ଋଣ ପାଇଁ ବ୍ଲକଗୁଡ଼ିକ ପକ୍ଷରୁ ପ୍ରୋଜେକସନ୍ :
୧୯୯୮-୯୯ଆର୍ଥିକ ବର୍ଷରେ ଯାଜପୁର ଜିଲ୍ଲାରେ ବିଭିନ୍ନ ବ୍ଲକ୍‌ରୁ ଉନ୍ନୟନମୂଳକ



Digitized by PPRACHIN, SOA

କାର୍ଯ୍ୟ ପାଇଁ କେବଳ ବାଣିଜ୍ୟିକ ବ୍ୟାଙ୍କରୁ ବ୍ୟାଙ୍କ ଋଣ ପାଇଁ ଆବେଦନ : ୧୩ କୋଟି ୪୩ ଲକ୍ଷ ୮୦ ହଜାର ଟଙ୍କା ।

ଆଇ.ଆର୍.ଡି.ପି ଯୋଜନାରେ ବ୍ୟାଙ୍କ ଋଣ ଆବେଦନ : ୧ କୋଟି ୩୨ ଲକ୍ଷ ।

କଟକ ଗ୍ରାମ୍ୟ ବ୍ୟାଙ୍କଗୁଡ଼ିକରୁ ଋଣ ଆବେଦନ : ୯ କୋଟି ୪୨ ଲକ୍ଷ ୨୫ ହଜାର ।

ରାଜ୍ୟ ସମବାୟ ବ୍ୟାଙ୍କ ଓ କେନ୍ଦ୍ରୀୟ ସମବାୟ ବ୍ୟାଙ୍କରୁ ଆଇ.ଆର୍.ଡି.ପି.ରେ ଋଣ ଆବେଦନ : ୮୩ ଲକ୍ଷ ୨୦ ହଜାର ।

ସେଣ୍ଟ୍ରାଲ୍ କୋ.ଅପରେଟିଭ୍ ବ୍ୟାଙ୍କ ଓ ରାଜ୍ୟ ସମବାୟ ବ୍ୟାଙ୍କରୁ ମୋଟ ଋଣ ପାଇଁ ଆବେଦନ : ୮କୋଟି ୭୩ ଲକ୍ଷ ୫୦ ହଜାର ।

ସମଗ୍ର ଜିଲ୍ଲାରେ ଆଇ.ଆର.ଡି.ପି. ଯୋଜନାରେ ମୋଟ ଋଣ ଆବେଦନ : ୨ କୋଟି ୯୫ ଲକ୍ଷ ୯୨ ହଜାର ଟଙ୍କା ।

**ସମଗ୍ର ଜିଲ୍ଲାରେ ବିଭିନ୍ନ କ୍ଷେତ୍ରରେ ବ୍ୟାଙ୍କଋଣ ଆବେଦନ :**

| | |
|---|---|
| କ୍ଷୁଦ୍ର ଜଳସେଚନ ବାବଦରେ | : ୩୩.୨୦ଟଙ୍କା |
| ଭୂ-ଉନ୍ନୟନ | : ୧ କୋଟି ୬୨ ଲକ୍ଷ |
| ବୃକ୍ଷରୋପଣ ଓ ଫଳଚାଷ | : ୨୧ ଲକ୍ଷ |
| ଟ୍ରାକ୍ଟର ପାୱାରଟିଲର | : ୧କୋଟି ୪୪ ଲକ୍ଷ |
| ପଶୁ ସଂପଦ | : ୮୭ ଲକ୍ଷ |
| ମତ୍ସ୍ୟଚାଷ | : ୬୩ ଲକ୍ଷ, |
| ଜୈବିକ ବାଷ୍ପ (ଗୋବରଗ୍ୟାସ ଇତ୍ୟାଦି) | : ୫୦ ଲକ୍ଷ, |
| ନନ୍-ଫାର୍ମ ସେକ୍ଟର | : ୧ କୋଟି ୨୧ ଲକ୍ଷ, |
| ଅନ୍ୟାନ୍ୟ କ୍ଷେତ୍ର | : ୨୦ କୋଟି ୪୦ ଲକ୍ଷ |
| କୃଷିଋଣ | : ୧୦ କୋଟି, |
| ଏନ୍.ଏଫ୍.ଏସ୍ | : ୯୯ ଲକ୍ଷ |
| ୱାର୍କିଂ କ୍ୟାପିଟାଲ | : ୧ କୋଟି । |
| **ସର୍ବମୋଟ ଋଣ ଆବେଦନ** | **: ୩୯ କୋଟି ୭୦ ଲକ୍ଷ ୭୦ ହଜାର ।** |

**ଜିଲ୍ଲା ଭିତରେ କାର୍ଯ୍ୟରତ ବୀମା କମ୍ପାନୀ ସଂଖ୍ୟା : ୫**

(କ) ଲାଇଫ ଇନସୁରାନସ୍ କର୍ପରୋସେନ ଅଫ୍ ଇଣ୍ଡିଆ, ଯାଜପୁର ଟାଉନ,
(ଖ) ନିଉଇଣ୍ଡିଆ ଆସୁରାନସ୍ କମ୍ପାନୀ ଲିମିଟେଡ଼, ଫୋନ : ୨୦୪୮୧/୨୦୪୮୩
(ଗ) ନେସନାଲ ଇନସୁରାନ୍ସ କମ୍ପାନୀ ଲିମିଟେଡ଼, ଯାଜପୁର ରୋଡ଼
(ଘ) ଇଉନାଇଟେଡ଼ ଇଣ୍ଡିଆ ଇନ୍ସୁରାନ୍ସ କମ୍ପାନୀ ଲିମିଟେଡ଼, ଯାଜପୁର ରୋଡ଼
(ଙ) ଓରିଏଣ୍ଟାଲ ଇନସୁରାନ୍ସ କମ୍ପାନୀ ଲିମିଟେଡ଼, ଯାଜପୁର ରୋଡ ।





ସୌଜନ୍ୟ

**ଶରତ ଚନ୍ଦ୍ର ପ୍ରଧାନ**

ଭାରତୀୟ ଷ୍ଟେଟ ବ୍ୟାଙ୍କ, ବାଲିଚନ୍ଦ୍ରପୁର



Digitized by PPRACHIN, SOA

# ମଧୁପୁର ଇଷ୍ଟେଟ୍

✤ ରାଜ କିଶୋର ଧୀର

ମଧୁପୁର ଇଷ୍ଟେଟ୍ । ପଶ୍ଚିମରେ ଢେଙ୍କାନାଳ, ଦକ୍ଷିଣରେ ପ୍ରସିଦ୍ଧ ମହାବିନାୟକ ପୀଠ-ଦର୍ପଣୀ ଇଷ୍ଟେଟ୍ । ପୂର୍ବରେ ବ୍ରାହ୍ମଣୀର ଅଳସୀ କନ୍ୟା କେଲୁଅ ନଦୀ ଓ ଉତ୍ତରରେ ବ୍ୟାସ ସରୋବର, ଏହି ଇଷ୍ଟେଟ୍‌ର ସୀମା ନିର୍ଣ୍ଣୟ କରେ । ଆୟତନ ୭୯ ବର୍ଗମାଇଲ୍ । ଅସ୍ଥାୟୀ ମାହାଲରେ ୪୨ ନମ୍ବର ତଉଜି ନରସିଂହପୁର, ମୁଗୁପାଳ ପ୍ରଭୃତି ପ୍ରାୟ ୨୦ ବର୍ଗମାଇଲ୍ ଏହି ଇଷ୍ଟର୍‌ର ଅନ୍ତର୍ଗତ ଥିଲା ।

ଏହି ଇଷ୍ଟେଟ୍‌ର ଇତିହାସ ବହୁ ପ୍ରାଚୀନ କିମ୍ବଦନ୍ତୀ ବହନ କରି ଗଜପତି ପୁରୁଷୋତ୍ତମ ଦେବଙ୍କ କାଞ୍ଚି ଅଭିଯାନ ପୂର୍ବରୁ ଉଦୟ କର୍ଣ୍ଣ ସିଂହ ଯୋଧ, ଜୟପୁରରୁ ଆସି ପୁରୀରେ ଅବସ୍ଥାନ କରୁଥିଲେ । କାଞ୍ଚି ଅଭିଯାନରେ ନିଜର ଶକ୍ତି ପ୍ରଦର୍ଶନ କରି ସେ ଗଜପତିଙ୍କର ପ୍ରିୟ ପାତ୍ର ହୋଇପାରିଥିଲେ ଓ ଜମିଦାରୀ ଲାଭ କରିଥିଲେ ମଧୁପୁର ଇଷ୍ଟେଟ । ପୁରୁଷୋତ୍ତମଙ୍କ ସମୟ ଖ୍ରୀ ୧୪୬୬-୧୪୯୭ । ଏହି କିମ୍ବଦନ୍ତୀ ଅନୁସାରେ ମଧୁପୁର ଇଷ୍ଟେଟ୍‌ରେ ବର୍ତ୍ତମାନର ରାଜବଂଶ ପାଞ୍ଚଶହ ବର୍ଷ ଧରି ଶାସନ କରି ଆସୁଛନ୍ତି ।

ମଧୁପୁରର ପ୍ରଥମ ରାଜପ୍ରାସାଦ ଥିଲା ଗୋକର୍ଣ୍ଣେଶ୍ୱର ନିକଟସ୍ଥ ଦେଉଳି ପାହାଡ ଉପରେ । ଜଗନ୍ନାଥ ସଡକର ଅନତି ଦୂରରେ ।

ମଧୁପୁର ଇଷ୍ଟେଟ୍‌ର ଶାସନ କର୍ତ୍ତାଥିଲେ କମା ବ୍ରାହ୍ମଣ । ତାଙ୍କର ରାଜଧାନୀ ଥିଲା ବେଢ଼ା ପାହାଡ ଉପରେ । ଏବେ ଏହି ସ୍ଥାନରେ ମୁନୀ ବାବାଙ୍କ ମଧୁପୁର ବେଢ଼ା ଶ୍ରୀଗୁରୁ ଆଶ୍ରମ ଅବସ୍ଥିତ । ଏହି କମା ବ୍ରାହ୍ମଣଙ୍କୁ ଖ୍ରୀ ୧୬୮୮-୧୭୧୭ ମଧ୍ୟରେ ନିପାତ କରି ତତ୍‌କାଳୀନ ରାଜା ସମ୍ଭବତଃ, କୃପାସିନ୍ଧୁ ସମଗ୍ର ମଧୁପୁର ଇଷ୍ଟେଟ୍ କରଗତ କରିଥିଲେ ।

ଖ୍ରୀ ୧୭୬୧-୮୬ ମଧ୍ୟରେ ୮ ରାଜା ଘନଶ୍ୟାମଙ୍କର କନ୍ୟା ଭାବେଶ୍ୱରୀଙ୍କ ନାମରେ ଭାବଦେଇ ପୁଷ୍କରିଣୀ ଖନନ କରାଯାଇଥିଲା । ଏହା ଏକ ଆଦର୍ଶ ପୁଷ୍କରିଣୀ । ଏହାର ସ୍ୱଚ୍ଛ ସଲିଳର ମଧୁରତା ଏବେ କେବଳ ସ୍ମୃତି ପଟରେ ରହିଅଛି । ଚତୁପାର୍ଶ୍ୱରେ ବୃହଦ୍ ପାବଚ୍ଛ ଶ୍ରେଣୀ, ଶିବ ମନ୍ଦିର ଓ ସର୍ବୋପରି ଏହାର ମଧୁର ଜଳ ବିଶେଷ ଅକର୍ଷଣୀୟ ଓ ରୁଚିକର ଥିଲା । ପ୍ରାୟ କୋଡ଼ିଏ ବର୍ଷ ହେବ୍ ସରକାରଙ୍କର ତ୍ରୁଟି ପୂର୍ଣ୍ଣ ନିଷ୍ପତ୍ତି ଯୋଗୁ ଏବେ ଏହା ଦଳ କର୍ଦ୍ଦମ ପରିପୂର୍ଣ୍ଣ ଭଗ୍ନ ପାବଚ୍ଛରେ କଙ୍କାଳମୟ ଜରାଜୀର୍ଣ୍ଣ ବ୍ୟାଧିଗ୍ରସ୍ତ ବୃଦ୍ଧାଭଳି ପଡି ରହିଛି ।

ମଧୁପୁର ଗଡସ୍ଥ ରଘୁନାଥଜୀଉଙ୍କ ମନ୍ଦିର ଓ ସମ୍ମୁଖସ୍ଥ ବିରାଟ କୂପ ତତ୍‌କାଳୀନ ରାଜା ରାମଚନ୍ଦ୍ର ନିର୍ମାଣ କରିଥିଲେ । ଗୋପାଳଜୀଉ ମନ୍ଦିରର ନିର୍ମାଣକାଳ ସପ୍ତଦଶ ଶତାବ୍ଦୀର ଷଷ୍ଠଦଶକ ରାଜା ଗୋପୀନାଥ ଏହାର ନିର୍ମାଣ ଆରମ୍ଭ କରିଥିଲେ ମଧ୍ୟ ଏହାଙ୍କର ପୁତ୍ର ଘନଶ୍ୟାମ ଏହା ଶେଷ କରିଥିଲେ । ସେହିପରି ବଡ଼ ଦେଉଳ ରାଜା ସୁଦର୍ଶନ ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଦଶକରେ ନିର୍ମାଣ କରାଇଥିଲେ ।

ଏତଦ୍ ବ୍ୟତୀତ ବିଭିନ୍ନ ସ୍ଥାନରେ କୂପ ଓ ପୁଷ୍କରିଣୀ ନିର୍ମାଣ କରାଇବା, ଜଳ



Digitized by PPRACHIN, SOA

ସେଚନର ସୁବିଧା ନିମନ୍ତେ ନାଳ ଖନନ କରାଇବା ପ୍ରଭୃତି ମଧୁପୁର ରାଜବଂଶର ଅକ୍ଷୟ କାର୍ତ୍ତି । ବର୍ତ୍ତମାନ ମଧୁପୁର ଗଡ଼ଠାରେ ଥିବା ମଧୁପୁର ରାଜବାଟୀର ନିର୍ମାଣ ରାଜା କୃଷ୍ଣଚନ୍ଦ୍ର କରିଥିଲେ ମଧ ପରବର୍ତ୍ତୀ କାଳରେ ରାଜା ନାରାୟଣ ଚନ୍ଦ୍ର ଓ ରାଜା ବୃନ୍ଦାବନ ଚନ୍ଦ୍ର ଏହାର ସଂପ୍ରସାରଣ କରାଇଥିଲେ ।

ଏହି ମଧୁପୁର ରାଜବଂଶର ରାଜା ନାରାୟଣ ଚନ୍ଦ୍ର (ଖ୍ରୀ ୧୮୮୮ ରୁ ଖ୍ରୀ ୧୯୪୬) ମଧରେ ବହୁବିଧ ଉନ୍ନତି ମୂଳକ କାର୍ଯ୍ୟ ରାଜ୍ୟରେ କରାଇଥିଲେ । ରାସ୍ତା ନିର୍ମାଣ ଓ ବିଭିନ୍ନ ସ୍ଥାନରେ ଆମ୍ବ ବଗିଚା ଯଥା– ମଧୁବନ, କଲଣ, ଇଚ୍ଛାପୁର, ମଧୁପୁର ପ୍ରଭୃତି ସ୍ଥାନରେ ନିଡିଆ, ଗୁଆ ବଗିଚା ଯଥା– କୁସ୍ତିରା, ସିଂହାପୁର ପ୍ରଭୃତି ସ୍ଥାନରେ କରାଇଥିଲେ, ଯାହା ଅଦ୍ୟାବଧି ରହିଅଛି ।

ଏହାଙ୍କ ସମୟରେ ମଧୁପୁର ଇଷ୍ଟେଟ୍ ମନ୍ଦିରମାଳିନୀ ହୋଇ ପାରିଥିଲା । ଗୋକର୍ଣ୍ଣେଶ୍ୱର ମନ୍ଦିରର ମୁଖଶାଳା, ଧର୍ମଶାଳା, ମଂଗଳା, ଅଲେଇଙ୍କ ମନ୍ଦିର, ନୀଳକଣ୍ଠେଶ୍ୱର, ଅଷ୍ଟଶମ୍ଭୁ, ଭାବେଶ୍ୱର, ସିଂହାପୁର ନାରାୟଣଙ୍କ ମନ୍ଦିର, ମଧୁପୁର ପାହାଡର ଚତୁଃପାର୍ଶ୍ୱରେ ଦେବୀ ମନ୍ଦିରମାନ ଓ ପଲ୍ଲୀ ଅଞ୍ଚଳରେ ଅସଂଖ୍ୟ ଦେବାଦେବୀ ମନ୍ଦିର ନିର୍ମାଣ ସେ କରାଇଥିଲେ ।



ବ୍ରାହ୍ମଣୀର କରାଳ ବନ୍ୟାରୁ ରକ୍ଷା କରିବା ନିମନ୍ତେ ୧୯୩୬ ମସିହାରେ ଖପରନାଳି ବନ୍ଧ ନିର୍ମାଣ ଓ ବାଉଁଶ ଘାଇ ବନ୍ଧର ଉନ୍ନତି କରଣ କରାଇଥିଲେ । ବେଣାପାଟ ରାସ୍ତା ପାହାଡ ଚାରିପାଖ ରାସ୍ତା, ଗଡ଼ମଧୁପୁର ରେଲୱେ ଷ୍ଟେସନକୁ ରାସ୍ତା ନିର୍ମାଣ, ଇମାମନଗର ପାଇକ ବସ୍ତି ମଧ ତାଙ୍କର ଅବଦାନ । ସେ ମଧୁପୁର ଗଡ଼ଠାରେ ଡାକ୍ତରଖାନା ଖ୍ରୀ : ୧୯୩୫ ପ୍ରତିଷ୍ଠା କରି ସ୍ୱାସ୍ଥ୍ୟ ସେବା ଯୋଗାଇ ଦେଇଥିଲେ ।

ରାଜା ନାରାୟଣ ଚନ୍ଦ୍ର ମଧ ଓଡ଼ିଶା-ବିହାର ଷ୍ଟେଟ୍ କାଉନ୍ସିଲ୍‌ର ନିର୍ବାଚିତ ସଦସ୍ୟ ଥିଲେ । ଉତ୍କଳ ମଣି ଗୋପବନ୍ଧୁ ବହୁବାର ଏଠାକୁ ଆସିଛନ୍ତି ।

ଓଡ଼ିଶାର ନାଟ୍ୟ ଜଗତକୁ ମଧୁପୁରର ଦାନ ଅବିସ୍ମରଣୀୟ । ରାଜା ନାରାୟଣ ଚନ୍ଦ୍ରଙ୍କର ଅନୁଜ ବଳଦେବ ଥିଲେ ଏକାନ୍ତ ଭାବେ ସଂଗୀତ ଓ ନାଟ୍ୟ ପ୍ରେମୀ । ଅଷ୍ଟାଦଶ ଶତାବ୍ଦୀରେ ସେ ଏଠାରେ ଏକ ନାଟ୍ୟଦଳ ଗଠନ କରିଥିଲେ, ଯାହା ଓଡ଼ିଶାର ସର୍ବପ୍ରଥମ ନାଟ୍ୟଦଳ ରୂପେ ସ୍ୱୀକୃତି ପାଇବାକୁ ଯୋଗ୍ୟ ଅଟେ । ସଂଗୀତ ଶିକ୍ଷାଦାନ ଏହାର ଥିଲା ଅବିଚ୍ଛେଦ୍ୟ ଅଙ୍ଗ । ମଧୁପୁର ଗଡ଼ ନିବାସୀ ୰ ଶ୍ୟାମସୁନ୍ଦର ଧୀର ଏହି ଅନୁଷ୍ଠାନର ଶିଷ୍ୟ ଥିଲେ । ପରବର୍ତ୍ତୀ କାଳରେ କଟକ ଜଗନ୍ନାଥ ବଲ୍ଲଭରେ ଅବସ୍ଥାନ କରୁଥିବା ସମୟରେ ରେଡିଓ ଷ୍ଟେସନ୍ ଓ କଲେଜମାନଙ୍କରେ ସଂଗୀତ ଶିକ୍ଷା ଦାନରେ କୃତିତ୍ୱ ଅର୍ଜନ କରିଥିଲେ । ମଧୁପୁର ଇଷ୍ଟେଟ୍ ଅନ୍ତର୍ଗତ ହରିପୁର (କୁଆଖିଆ ଛକଠାରୁ ପାଞ୍ଚ



Digitized by PPRACHIN, SOA



କି.ମି. ପୂର୍ବ) ଠାରେ ଏ ପର୍ଯ୍ୟନ୍ତ ଯାତ୍ରା ପୋଷାକ, ସିନ୍ ପ୍ରଭୃତି ତିଆରି କରାଯାଉଛି । ଯାତ୍ରା ପୋଷାକ ପ୍ରସ୍ତୁତିରେ ମଧୁପୁର ଇଷ୍ଟେଟ୍ ସର୍ବ ପ୍ରାଚୀନ ଓ ସର୍ବପ୍ରଥମ ।

ରାଜା ନାରାୟଣ ଚନ୍ଦ୍ର ଥିଲେ ପ୍ରଜାବତ୍ସଳ ଓ ଗୁଣୀ । ସେ ନିଜେ ଉଚ୍ଚଶିକ୍ଷା ପାଇ ନ ଥିଲେ ମଧ ତାଙ୍କର ଇଷ୍ଟେଟ୍ ମଧ୍ୟରେ କୃତୀ ଛାତ୍ରୀ ଛାତ୍ରମାନଙ୍କୁ ଶିକ୍ଷାର ସମସ୍ତ ଖର୍ଚ୍ଚ ବହନ କରି ଉଚ୍ଚଶିକ୍ଷିତ କରାଇ ପାରିଥିଲେ । ତାଙ୍କର ପ୍ରୋତ୍ସାହନରେ ପ୍ରଥମ ଗ୍ରାଜୁଏଟ୍ ରୂପେ ✓ ପୀତାମ୍ବର ବଳ ପାଟଣା ୟୁନିଭରସିଟିରେ କୃତିତ୍ୱ ପ୍ରଦର୍ଶନ କରି ପାରିଥିଲେ । ତାଙ୍କରି ସାହାଯ୍ୟରେ ✓ ଡାକ୍ତର ରାମଚନ୍ଦ୍ର ବାରିକ କଲିକତାରୁ ହୋମିଓ ପ୍ୟାଥିକରେ ମେଡିସିନ୍ ସର୍ଜରୀ ଓ ଶିଶୁରୋଗ ବିଶେଷଜ୍ଞ ହୋଇ ମଧୁପୁର ଗଡ଼ରେ ୧୯୩୫ ମସିହାରୁ ଡାକ୍ତରଖାନାର ଡାକ୍ତର ରୂପେ କାର୍ଯ୍ୟ କରି ନିଜର ଦକ୍ଷତା ପ୍ରତିପାଦିତ କରି ଜଣେ ବିଶିଷ୍ଟ ଚିକିତ୍ସକ ରୂପେ ଖ୍ୟାତି ଅର୍ଜନ କରିଥିଲେ । କେବଳ ଏତିକି ନୁହେଁ ରାଜା ନାରାୟଣ ଚନ୍ଦ୍ରଙ୍କର ଆର୍ଥିକ ସାହାଯ୍ୟରେ ✓ ବାସୁଦେବ ମହାପାତ୍ର ଖଡ଼ୀରତ୍ନ ବନାରସ୍ ୟୁନିଭରସିଟିରୁ Astronomy ଓ Astrology ରେ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୋଇ ସମଗ୍ର ଓଡ଼ିଶାରେ ପ୍ରଚଳିତ ଅରୁଣୋଦୟ ଖଡୀରତ୍ନ ପଞ୍ଜିକାର ଗଣନା ଦୀର୍ଘ ଚାଳିଶ ବର୍ଷକାଳ କରୁଥିଲେ ଓ ତାଙ୍କର ପୁତ୍ର ଶ୍ରୀ ବିଷ୍ଣୁ ପ୍ରସାଦ ମହାପାତ୍ର ଖଡୀରତ୍ନ ଏବେ ଓଡ଼ିଶା କୋହେନୂର ପ୍ରେସର ପଞ୍ଜିକା ଦୀର୍ଘଦିନ ଧରି ଗଣନା କରି ଆସୁଅଛନ୍ତି ।

ତାଙ୍କର କନିଷ୍ଠ ପୁତ୍ର ପ୍ରଧାପକ ହରିହର ମହାପତ୍ର ଖଡ଼ୀରତ୍ନ ମଧ ଧର୍ମଗ୍ରନ୍ଥ ଷ୍ଟୋରର ଖଡୀରତ୍ନ ପଞ୍ଜିକା ଗଣନା କରନ୍ତି । ମଧୁପୁର ଇଷ୍ଟେଟ୍‌ର ଏହି ଅବଦାନ ସମଗ୍ର ଓଡ଼ିଶାର ସାଂସ୍କୃତିକ, ଧାର୍ମିକ ଓ ସାମାଜିକ ଜୀବନକୁ ପୁଷ୍ଟିଳ ଓ ସୁନିୟନ୍ତ୍ରିତ କରି ଆସୁଅଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ଇଷ୍ଟେଟ୍‌ର ଦାଣ୍ଡିଆ ଖେଳ କ୍ରୀଡା ଜଗତରେ ମଧୁପୁରର ସ୍ୱାତନ୍ତ୍ର୍ୟ ରକ୍ଷା କରିଥାଏ । ଏହି ଦାଣ୍ଡିଆ ଖେଳ ଅନ୍ୟତ୍ର ପ୍ରାୟ ଦେଖାଯାଏ ନାହିଁ । ଲେଖକଙ୍କର ପିତୃବ୍ୟ ସ୍ୱର୍ଗତ ଦାମୋଦର ଧୀର କେଶର ସିଂହ ଥିଲେ ମଧୁପୁର ରାଜା ଓ କ୍ଷତ୍ରୀୟ ବାହିନୀର ଯୁଦ୍ଧ ବିଦ୍ୟାଗୁରୁ ।

ମାତ୍ର ବର୍ତ୍ତମାନର ମଧୁପୁର ଇଷ୍ଟେଟ୍‌ର ରାଜଧାନୀ ମଧୁପୁର ଗଡ଼ ପ୍ରତି ସରକାରଙ୍କର ସୁଦୃଷ୍ଟି ପଡୁନାହିଁ । ଫଳରେ ଏହାର କୀର୍ତ୍ତିରାଜି ଏବେ ଭଗ୍ନ ଅବସ୍ଥାରେ ।

*କାର୍ଯ୍ୟକାରୀ ସଭାପତି*
ଯାଜପୁର ଜିଲ୍ଲା ସାମ୍ବାଦିକ ସଂଘ
ସା/ପୋ. : ଗଡ଼ମଧୁପୁର

ଠଠଠ



Digitized by PPRACHIN, SOA

# ସ୍ୱାଧୀନତା ସଂଗ୍ରାମକୁ ଯାଜପୁରର ଦାନ

ଦେଶର ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ ଓଡ଼ିଶାର ଯେଉଁ ସଂଗ୍ରାମୀମାନେ ବହୁ ତ୍ୟାଗ ସ୍ୱୀକାର କରିବା ସଙ୍ଗେ ସଙ୍ଗେ ବିଦେଶୀ ଶାସନ ଅମଳରେ ଅକଥନୀୟ ଅତ୍ୟାଚାରର ସମ୍ମୁଖିନ ହୋଇଥିଲେ ସେମାନଙ୍କ ମଧ୍ୟରୁ ଅନେକ ଆଜି ଆଉ ନାହାଁନ୍ତି । ୧୯୪୨ ମସିହା ଭାରତ ଛାଡ଼ ଆନ୍ଦୋଳନ ବେଳେ ବରୀ ବ୍ଲକର ସାନନ୍ଦ, ସାଉଁଟି, ମାୟାଧର ଓ ହାଡିବଂଧୁ ସହୀଦ ହୋଇଛନ୍ତି । ୧୯୩୦ ମସିହା ବେଳକୁ ବାନର ସେନା ରୂପେ ଏବଂ ପରବର୍ତ୍ତୀ କାଳରେ ପ୍ରତ୍ୟକ୍ଷ ସଂଗ୍ରାମୀ ରୂପେ ନିର୍ଯ୍ୟାତୀତ ହୋଇଥିବା ଏବଂ କାରାଦଣ୍ଡ ଭୋଗ କରିଥିବା ବହୁ ସଂଗ୍ରାମୀ ବୀରମାନଙ୍କର ତ୍ୟାଗ, ନିଷ୍ଠା ଓ ପରାକାଷ୍ଠାର ଇତିହାସ ଏବେ ମଳିନ ହେବାକୁ ବସିଛି । ଆଉ କେତେକ ବର୍ଷପରେ ଏମାନଙ୍କର ତ୍ୟାଗପୂତ ଇତିହାସ ହୁଏତ ବିସ୍ମୃତିର ଅତଳ ଗର୍ଭରେ ବିଲୀନ ହୋଇଯିବ । ଯେଉଁ ପୂର୍ବ ସୂରୀମାନେ ସେମାନଙ୍କର ସୁଖ ସ୍ୱାଚ୍ଛନ୍ଦ୍ୟକୁ ଜଳାଞ୍ଜଳି ଦେଇ ଦେଶର ସ୍ୱାଧୀନତା ପାଇଁ ରକ୍ତ ଦେଇ ଯାଇଛନ୍ତି, ସେମାନଙ୍କର ଆଦର୍ଶ ଓ ଅବଦାନ ଭବିଷ୍ୟତ ବଂଶଧରମାନଙ୍କ ମାନସ ପଟରେ ଉଜ୍ଜୀବିତ କରି ରଖିବା ଏକ ପରମ ଜାତୀୟ କର୍ତ୍ତବ୍ୟ । ସେମାନଙ୍କ ମଧ୍ୟରୁ ଯାଜପୁର ଜିଲ୍ଲାର କେତେକ ସଂଗ୍ରାମୀ ପୁରୁଷଙ୍କ ସଂପର୍କରେ ସମ୍ୟକ ବିବରଣୀ ପ୍ରଦାନ କରୁଛୁ ।

## ଶ୍ରୀ ଅମରେନ୍ଦ୍ରନାଥ ଦତ୍ତ :

ଯାଜପୁର ଥାନା ମହେଶ୍ୱରପୁର ଗ୍ରାମରେ ଅମରେନ୍ଦ୍ର ନାଥ ଦତ୍ତଙ୍କ ଜନ୍ମ । ୧୯୩୨ ମସିହାରେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ ୯ ମାସ ଜେଲ ଦଣ୍ଡ ପାଇଥିଲେ ତାଙ୍କୁ କଟକରୁ ପାଟନା କ୍ୟାମ୍ପ ଜେଲକୁ ବଦଳି କରାଯାଇଥିଲା ।

## କାଳନ୍ଦୀ ଚରଣ ସାହୁ :

କାଳନ୍ଦୀ ଚରଣ ସାହୁଙ୍କ ଜନ୍ମ ୧୯୧୪ ମସିହାରେ ଧର୍ମଶାଳା ଥାନା ବନ୍ଧଡିହ ଗ୍ରାମରେ । ତାଙ୍କ ପିତାଙ୍କ ନାମ ରଙ୍ଗାଧର ସାହୁ । ୧୯୩୦ ମସିହାରେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ ଗଞ୍ଜେଇ ମଦ ଦୋକାନ ଆଗରେ ପିକେଟିଂ କରିଥିଲେ ଏବଂ ପୋଲିସ ହାତରେ ବହୁଥର ବେତମାଡ଼ ଖାଇଥିଲେ । ପିକେଟିଂ କରିବାରୁ ପୋଲିସ୍ ତାଙ୍କୁ ଟେକିନେଇ ଚନ୍ଦକା ଜଙ୍ଗଲରେ ଛାଡିଦେଇ ଆସିଥିଲା ତାଙ୍କୁ ୩ମାସ ଜେଲ ଦଣ୍ଡ ହେଲା ଓ କଟକ ଜେଲରୁ ପାଟନା କ୍ୟାମ୍ପ ଜେଲକୁ ପଠାଇ ଦିଆଗଲା । ସେଠାରେ ଫେରିବା ପରେ ସେ ପୁରୀ ସେବାଦଳ ଶିବିରରେ ଯୋଗ ଦେଇଥିଲେ । ସ୍ୱରାଜ୍ୟ ଆଶ୍ରମ ଦଖଲ ବେଳେ ପୋଲିସ ତାଙ୍କୁ ଘୋଷାରି ଘୋଷାରି ମାଡ଼ ଦେଇ ବେହୋସ ଅବସ୍ଥାରେ ପୁଲିସ ଭ୍ୟାନରେ ନେଇ ଯାଇଥିଲେ । ୧୯୩୨ରେ ୪ ମାସ ଜେଲଦଣ୍ଡ



Digitized by PPRACHIN, SOA

ହେଲା । ୧୯୩୩ ମସିହାରେ ତାଙ୍କର ବିଚାର ହୋଇ ୨ ମାସ ଜେଲ ହୋଇଥିଲା । ସେହି ବର୍ଷ ଏପ୍ରିଲ ମାସରେ ପୁଣିଥରେ ଗିରଫ ହୋଇ ୬ ମାସ ପାଇଁ ପାଟନା କ୍ୟାମ୍ପ ଜେଲରେ ରହିଥିଲେ । ୧୯୪୨ରେ ଜେଲ ନ ଯାଇ ଲୁଚି ଛପି ସଂଗ୍ରାମ ଚଳାଇଥିଲେ ।

## ବୈଦ୍ୟନାଥ ଦାସ :

ବିଞ୍ଝାରପୁର ଥାନା ବ୍ରାହ୍ମଣୀ ଗାଁରେ ବୈଦ୍ୟନାଥ ଦାସଙ୍କ ଜନ୍ମ । ତାଙ୍କ ପିତାଙ୍କ ନାମ ରାମଚନ୍ଦ୍ର ଦାସ । ସେ ୧୯୩୨ ମସିହାରେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ । ୧୯୩୧ ରେ ସେ ପୁରୀ ସେବାଦଳ ତାଲିମ କେନ୍ଦ୍ରରେ ତାଲିମ ପାଇଥିଲେ । ବିଲାତି ଲୁଗା ଦୋକାନ ଆଗରେ ପିକେଟିଂ କରି ବେତମାଡ଼ ଖାଇଥିଲେ । ଏହି ଆନ୍ଦୋଳନ ବେଳେ ତାଙ୍କୁ ୬ ମାସ ଜେଲଦଣ୍ଡ ହୋଇଥିଲା । ଦ୍ୱିତୀୟ ଥର ପିକେଟିଂରେ ୫ ମାସ ଜେଲ ଦଣ୍ଡ ପାଇ ସେ ପାଟନା କ୍ୟାମ୍ପ ଜେଲକୁ ଯାଇଥିଲେ । ସେଠାରୁ ଖଲାସ ହୋଇ ଆସିବା ପରେ କଟକରେ ପୁଣି ପିକେଟିଂ କରି ୪ ମାସ ଜେଲ ଦଣ୍ଡ ହେଲା ଓ ପୁଣି ପାଟନା ଜେଲକୁ ଗଲେ । ୧୯୪୨ 'ଭାରତ ଛାଡ଼' ଆନ୍ଦୋଳନରେ ଗିରଫ ହୋଇଥିଲେ ଏବଂ ୨ ବର୍ଷ ଜେଲ ଭୋଗି ବ୍ରହ୍ମପୁର ଜେଲରୁ ୧୯୪୫ ରେ ଖଲାସ ହୋଇଥିଲେ ।

## ✓ ଇନ୍ଦ୍ରମଣି ଜେନା :

✓ ଇନ୍ଦ୍ରମଣି ଜେନା. ପି-ଧରଣୀଧର ଜେନା, ଧର୍ମଶାଳା ଥାନା, କୋଟପୁର ଗ୍ରାମରେ ୧୯୦୪ ମସିହାରେ ଜନ୍ମଗ୍ରହଣ କରିଥିଲେ । ୧୯୩୦ ମସିହାରେ ଲବଣ ସତ୍ୟାଗ୍ରହରେ ଯୋଗ ଦେଇଥିଲେ । ୧୯୪୨ ଭାରତ ଛାଡ ଆନ୍ଦୋଳନରେ ଯୋଗ ଦେଇ ୨୯ ବର୍ଷ ୬ ମାସ ସଜା ପାଇଥିଲେ । ଓକିଲ ✓ ଦୀନବନ୍ଧୁ ସାହୁଙ୍କ ଅପିଲ ଫଳରେ, ୩ ବର୍ଷ ୬ ମାସ ଭୋଗ କରି ଖଲାସ ହେଲେ । ୫.୧୨.୮୩ ତାରିଖରେ ଇହଲୀଳା ତ୍ୟାଗ କଲେ ।

## ଧ୍ରୁବାନନ୍ଦ ଜେନା :

ଧର୍ମଶାଳା ଥାନା କୋଟପୁର ଗ୍ରାମରେ ଶ୍ରୀ ଧ୍ରୁବାନନ୍ଦ ଜେନାଙ୍କ ଜନ୍ମ । ତାଙ୍କର ପିତା ଶ୍ରୀ ସୁବଳ ଚରଣ ଜେନା । ସେ ୧୯୩୦ ରୁ ୩୨ ମସିହା ପର୍ଯ୍ୟନ୍ତ ଅନେକ ଥର ପୁଲିସ ହାତରେ ବେତମାଡ଼ ଖାଇଥିଲେ । କଟକ ଓ ପାଟଣା କ୍ୟାମ୍ପ ଜେଲରେ ଅନେକ ଥର ବନ୍ଦୀ ହୋଇଥିଲେ ।

## ହଳଧର ସାହାଣୀ :

ବରୀର ପଘିରା ଗ୍ରାମରେ ଶ୍ରୀ ହଳଧର ସାହାଣୀ ୧୯୧୧ ମସିହାରେ ଜନ୍ମ ହୋଇଥିଲେ । ୧୯୩୦ ମସିହାରେ ଗଞ୍ଜେଇ, ମଦ ଦୋକାନ ସାମନାରେ ପିକେଟିଂ କରି ଗିରଫ ହୋଇଥିଲେ । ୪ ମାସ ଜେଲ ଓ ୨୦୦ ଟଙ୍କା ଜୋରିମାନା ଅନାଦେୟ ୨ ମାସ ଜେଲ ଭୋଗ କଲେ । ସେହି ବର୍ଷ ଡିସେମ୍ବର ମାସରେ ସେ ପାଟନା ଜେଲକୁ ଗଲେ ୧୯୩୨ ରେ ତାଙ୍କୁ ଦ୍ୱିତୀୟ ଥର ପାଇଁ ୨ ମାସ ଜେଲ ଓ ୫୦ ଟଙ୍କା ଜୋରିମାନା ହୋଇଥିଲା । ସେହି ବର୍ଷ ପୁଣି ଥରେ ୪ ମାସ ସଶ୍ରମ କାରାଦଣ୍ଡ ଭୋଗ କରିଥିଲେ ।



Digitized by PPRACHIN, SOA

ତାଙ୍କ ପିତାଙ୍କ ନାମ ରୂପ ଚରଣ ସାହାଣୀ । ୧୯୩୦ରେ ପାଟନା ଜେଲରେ ଥିବା ବେଳେ ତାଙ୍କ ସଂପତ୍ତି ସ୍ୱଳ୍ପ ମୂଲ୍ୟରେ ନିଲାମ ହୋଇଯାଇଥିଲା ।

## ମହେଶ୍ୱର ମହାରଣା :

ଧର୍ମଶାଳା ଥାନା ପାଟପୁର ଗ୍ରାମରେ ମହେଶ୍ୱର ମହାରଣାଙ୍କ ଜନ୍ମ । ମଦ ଦୋକାନ ଓ ବିଦେଶୀ ଲୁଗା ଦୋକାନ ଆଗରେ ପିକେଟିଂ କରିଥିବାରୁ ପୋଲିସଠାରୁ ସେ ବହୁ ନିର୍ଯ୍ୟାତନା ଭୋଗ କରିଥିଲେ । ତାଙ୍କୁ ଧରିନେଇ ଚନ୍ଦକା ଜଙ୍ଗଲରେ ଛାଡି ଦିଆଯାଇଥିଲା । କିନ୍ତୁ ସେଥିରେ ସେ ବିଚଳିତ ନ ହୋଇ ପୁଣି ସେ ପିକେଟିଂ କରୁଥିବାରୁ ତାଙ୍କର ବିଚାର ହୋଇ ୬ ମାସ ଜେଲଦଣ୍ଡ ହୋଇଥିଲା । ସ୍ୱରାଜ୍ୟ ଆଶ୍ରମ ଦଖଲ ବେଳେ ପୋଲିସ ମାଡ଼ ଦେଇ ତାଙ୍କ ବାମଗୋଡ଼ ଭାଙ୍ଗି ଦେଇଥିଲେ । ମାଲଗୋଦାମ ପିକେଟିଂରେ ପୋଲିସ ତାଙ୍କୁ ଧରିନେଇ କାଠଯୋଡିର ତତଲା ବାଲିରେ ବସାଇଥିଲେ ।

## ବିପିନ ବିହାରୀ ମହାନ୍ତି :

ପି.-ବଟକୃଷ୍ଣ ମହାନ୍ତି । ପୋ-ସା-ବରୀ, ଜି-ଯାଜପୁର । ଜନ୍ମ ୧୯୧୩ ଜୁଲାଇ ତା ୨୮ । ୧୯୩୦ ରେ ଲବଣ ସତ୍ୟାଗ୍ରହରେ ଯୋଗ ଦେଇ ଗିରଫ୍ ହେଲେ । ଏକମାସ ଜେଲଦଣ୍ଡ ପାଇଥିଲେ । ଜେଲରୁ ଖଲାସ ହୋଇ ୧୯୩୨ ମସିହାରେ ଗିରଫ୍ ହେଲେ ଓ ଚାରିମାସ ଜେଲଦଣ୍ଡ ପାଇଥିଲେ । ୧୯୩୪ରେ ବ୍ୟକ୍ତିଗତ ସତ୍ୟାଗ୍ରହରେ ଚାରିମାସ ଜେଲ ବରଣ କରିଥିଲେ । ଯାଜପୁର ଜେଲ ଓ କଟକ, ପାଟଣା କ୍ୟାମ୍ପ ଜେଲରେ ସମସ୍ତ ଦଣ୍ଡ ଭୋଗ କରିଥିଲେ । ୧୯୪୦ ମସିହାରେ ଯୁଦ୍ଧ ବିରୋଧୀ ଧ୍ୱନୀ ଦେଇ ଚାରିମାସ କାରାଦଣ୍ଡ ଭୋଗ କରି ୧୯୪୨ ଅଗଷ୍ଟ ମାସରେ ଗିରଫ୍ ହୋଇ ୧୯୪୪ ମସିହା ଡ଼ିସେମ୍ବର ମାସରେ ଖଲାସ ହେଲେ । ୧୯୪୫ ମସିହାରେ ଛଅମାସ କାରାଦଣ୍ଡ ଭୋଗ କରିଥିଲେ ।

## ରାମଚନ୍ଦ୍ର ମିଶ୍ର :

ପି. ୰ ଆର୍ତ୍ତ୍ରି ମିଶ୍ର, ଗ୍ରାମ-ଏକତଳା, ବର୍ତ୍ତମାନର ସାଲେପୁର, ଭା- କବୀର-ପୁର, ଥାନା-ଧର୍ମଶାଳା, ଜି-ଯାଜପୁର, ଜନ୍ମ ମଇମାସ ୧୯୦୩ ମସିହା । ୧୯୨୧ ଓ ୧୯୨୨ ସ୍ୱାଧୀନତା ସଂଗ୍ରାମରେ ଭାଗନେଇ ଚାକିରିରୁ ଅନ୍ତର ହେଲେ । ୧୯୩୦ ଲବଣ ସତ୍ୟାଗ୍ରହରେ ଯୋଗଦେଇ ଆର୍ଥିକ ଦଣ୍ଡ ସହ ପୁଣି ଚାକିରିରୁ ଅନ୍ତର ହେଲେ । ୧୯୪୨ ଭାରତ ଛାଡ଼ ଆନ୍ଦୋଳନରେ ଯୋଗଦେଇ ଦେଢ଼ବର୍ଷ ଜେଲଦଣ୍ଡ ପାଇଲେ ।

## ୰ ଶଶିଭୂଷଣ ଦାସ :

୰ ଶଶିଭୂଷଣ ଦାସ, ପି-କରୁଣା କର ଦାସ, ସା-କଢ଼େଇ ଶାସନ, ଥାନା-ବଡ଼ଚଣା, ଜନ୍ମ-୧୯୧୩ ମସିହା ଫେବୃୟାରୀ ୧୩ ତାରିଖ । ୧୯୩୦ ମସିହାରେ କଟକ ଭିକ୍ଟୋରିଆ ହାଇସ୍କୁଲରୁ ଦଶମ ଶ୍ରେଣୀରୁ ପାଠପଢ଼ା ଛାଡ଼ି ସ୍ୱାଧୀନତା ସଂଗ୍ରାମରେ ଲୁଣ ମରା ଆନ୍ଦୋଳନରେ ଯୋଗ ଦେଲେ । ୧୯୩୦ ରୁ ୧୯୪୨ ମସିହା ମଧ୍ୟରେ ତିନିଥର ଜେଲଦଣ୍ଡ ମୋଟ ତିନିବର୍ଷ ଚାରିମାସ ଭୋଗିଥିଲେ । କଟକ ଜେଲ, ପାଟଣା



Digitized by PPRACHIN, SOA

କ୍ୟାମ୍ପ ଜେଲ ଓ ବ୍ରହ୍ମପୁର ଜେଲରେ ସମସ୍ତ ଦଣ୍ଡ ଭୋଗିଥିଲେ ।

## ଦୁର୍ଯ୍ୟୋଧନ ପଟ୍ଟନାୟକ :

ପି-ଅର୍ଜ୍ଜୁନ ପଟ୍ଟନାୟକ, ଗ୍ରାମ-ନଳକଣୀ ସିଂହପୁର ଗ୍ରାମରେ ୧୮୯୬ ମସିହାରେ ଜନ୍ମଗ୍ରହଣ କରିଥିଲେ । ୧୯୩୦ ମସିହାରେ ଲବଣ ସତ୍ୟାଗ୍ରହରେ ଯୋଗ ଦେଇଥିଲେ । ପୁଲିସ ଅତ୍ୟାଚାରରେ ବିଶେଷ ଆଘାତ ପାଇ ଶଯ୍ୟାସାୟୀ ହୋଇଥିଲେ । ୧୯୩୦ ରୁ ୧୯୪୭ ମଧ୍ୟରେ ବହୁବାର କାରାବରଣ କରିଛନ୍ତି । ଯାହାକି ପାଞ୍ଚବର୍ଷରୁ ଉର୍ଦ୍ଧ୍ୱ ହେବ । ଶେଷରେ ପାରାଦ୍ୱୀପ ଉଦୟ ବଟରେ ସନ୍ୟାସୀ ହୋଇ କାଳଯାପନ କରୁଥିଲେ । ୧୯-୩-୮୧ ମଟର ଦୁର୍ଘଟଣାରେ ପ୍ରାଣତ୍ୟାଗ କଲେ ।

## ପ୍ରିୟମ୍ବଦା ଦେବୀ :

(ଗ୍ରାମ-ବରୀ, ଜିଲ୍ଲା-ଯାଜପୁର) ୧୯୩୦ ମସିହାରେ ଗିରଫ୍ ହୋଇ ୩ ମାସ କାରାବରଣ କଲେ । କଟକ ଜେଲରୁ ହଜାରିବାଗ ଜେଲକୁ ପଠାଇ ଦିଆଗଲା । ୧୯୩୨ ମସିହାରେ ଜେଲରୁ ଖଲାସ ହୋଇ ପୁନର୍ବାର ଗିରଫ୍ ହେଲେ । ଗିରଫ୍ ହୋଇ ୪ ମାସ କାରାବରଣ କରିଥିଲେ । ୧୯୪୨ ମସିହା ଭାରତ ଛାଡ଼ ଆନ୍ଦୋଳନରେ ଯୋଗଦେଇ ଭାଗିରଥି ଦାସଙ୍କ ସହ ଗିରଫ୍ ହୋଇ ଯାଜପୁର ସ୍ପେଶାଲ୍ ମାଜିଷ୍ଟ୍ରେଟ୍ଙ୍କ ଦ୍ୱାରା ବିଚାର ହୋଇ ୬ ମାସ କାରାଦଣ୍ଡ ବରଣ କଲେ ।

## କାର୍ତ୍ତିକ ଚନ୍ଦ୍ର ମହାନ୍ତି :

ପି-ବିପ୍ର ଚରଣ ମହାନ୍ତି, ଗ୍ରାମ-ସୁଜନପୁର, ଥାନା-ଧର୍ମଶାଳା, ଜିଲ୍ଲା-ଯାଜପୁର । ତାଙ୍କର ଜନ୍ମ ୧୯୧୩ ମସିହାରେ । ୧୯୩୦ ମସିହାରେ ବାରିପଦା ଉଚ୍ଚ ବିଦ୍ୟାଳୟରୁ ପାଠପଢ଼ା ଛାଡ଼ି ଅସହଯୋଗ ଆନ୍ଦୋଳନରେ ଯୋଗ ଦେବା ପାଇଁ କଟକ ଆସିଥିଲେ । ସ୍ୱର୍ଗୀୟ ଗୋପବନ୍ଧୁ ଚୌଧୁରୀଙ୍କର ବାସଭବନରେ ସତ୍ୟାଗ୍ରହୀ ଭାବରେ ଯୋଗଦେଲେ । କଟକରେ ବିଲାତି ଲୁଗା ଦୋକାନରେ ପିକେଟିଂ କରି ୬ ମାସ କାରାବରଣ କରିଥିଲେ । ୧୯୩୧ ମସିହାରେ ହିନ୍ଦୁସ୍ଥାନ ସେବାଦଳ ଟ୍ରେନିଂ ପାଇଥିଲେ । ୧୯୩୨ ରେ ଯାଜପୁରଠାରେ ଶୋଭାଯାତ୍ରାରେ ଯାଉଥିବା ବେଳେ ପୋଲିସ ଗିରଫ୍ କଲେ । ସେଠାରେ ଏସ୍.ଡି.ଓ. କୋର୍ଟରେ ବିଚାର ହୋଇ ୩ ମାସ କାରାଦଣ୍ଡ ପାଇଁ କଟକ ଓ ପାଟଣା କ୍ୟାମ୍ପ ଜେଲରେ ଥିଲେ ।

## ମାଗୁଣୀ ଚରଣ କାନୁନ୍‌ଗୋ :

ପି-ବଳରାମ କାନୁନ୍‌ଗୋ, ସା-ବନ୍ଧାଳୋ, ଜି-ଯାଜପୁର । ୧୯୩୦ ମସିହା ପାଠ ପଢ଼ା ଛାଡ଼ି ଅସହଯୋଗ ଆନ୍ଦୋଳନରେ ଯୋଗଦେଇ କନକ ପୁରଠାରେ ଶରତ ଚନ୍ଦ୍ର ଦାସ, ନଟ୍ଟ ମୋହନ ମହାନ୍ତିଙ୍କ ସଙ୍ଗରେ ଗିରଫ ହୋଇ ଏକମାସ କାରାବରଣ କରିଥିଲେ । ୧୯୪୨ ମସିହାରେ ଭାରତ ଛାଡ ଆନ୍ଦୋଳନରେ ଗିରଫ ହୋଇ ମୁଷାବ



Digitized by PPRACHIN, SOA

ଖାଁଙ୍କ କୋର୍ଟରେ ବିଚାର ହୋଇ ବ୍ରହ୍ମପୁର ଜେଲରେ ଦୁଇବର୍ଷରୁ ଉର୍ଦ୍ଧ୍ୱକାଳ କାରାବରଣ କରିଥିଲେ ।

## ବଂଶୀଧର ଦ୍ୱିବେଦୀ :

ପି-ପଞ୍ଚାନନ ଦ୍ୱିବେଦୀ ୧୯୧୮ ମସିହାରେ ବରୀ ଅରଙ୍ଗାବାଦ ଗ୍ରାମରେ ତା. ୧୪.୧୧.୧୯୧୮ ରେ ଜନ୍ମଗ୍ରହଣ କରିଥିଲେ, ୧୯୩୦ ମସିହାରେ ଲବଣ ସତ୍ୟାଗ୍ରହରେ ଯୋଗ ଦେଇଥିଲେ । ୧୯୩୨ ମସିହାରେ ପକେଟିଂ କରିବାରେ ଦୁଇମାସ କଟକ ଓ  ପାଟଣା ଜେଲରେ ଥିଲେ । ୧୯୪୨ ମସିହାରେ ଗିରଫ୍ ହୋଇ କଟକଠାରେ ବନ୍ଦୀ ହୋଇ ନଅମାସ କାଳ କଟକ ଜେଲରେ ଥିଲେ ।

## କୃପାସିନ୍ଧୁ ରାୟ :

ପିତା-ମଦନ ରାୟ, ଗ୍ରାମ./ପୋ.-ବନମାଳୀପୁର, ଭାୟା-ଧର୍ମଶାଳା, ଜି-ଯାଜପୁର । ୧୯୦୨ ମସିହା ଜାନୁୟାରୀ ମାସରେ ଜନ୍ମଗ୍ରହଣ କରିଥିଲେ । ୧୯୩୨ ମସିହାରେ କଟକ ଆସି ମଦ ଓ ଗଞ୍ଜା ଅଫିମ ଦୋକାନ ଆଗରେ ପକେଟିଂ କରିଥିଲେ ଓ ପୋଲିସ ମାଡ଼ ଦେଇ ଘୋଷାରି ଘୋଷାରି ନେଇ ଗିରିଫ୍ କରିଥିଲେ । କଟକ ଟାଉନ୍ ଥାନାରେ ଉପବାସରେ ୧ ଦିନ ରହିବାପରେ ମୁକ୍ତ ହୋଇଥିଲେ । ସେ ବାରମ୍ବାର ପିକେଟିଂ କରିବାରୁ ପୁନର୍ବାର ଗିରଫ୍ ହୋଇ ୯ମାସ ପର୍ଯ୍ୟନ୍ତ କାରାଦଣ୍ଡ ଭୋଗ କରିଥିଲେ । ୧ ମାସ କଟକ ଜେଲରେ ରହିବା ପରେ ପାଟନା କ୍ୟାମ୍ପ ଜେଲକୁ ସ୍ଥାନାନ୍ତରିତ କରାଗଲା ।

## ଆକୁଳି ଚରଣ ମେକାପି :

ସା-ରଂପା, ପୋଅ-ବରୀ, ଜି-ଯାଜପୁର । କେନ୍ଦ୍ରାପଡା ଥାନା ଅନ୍ତର୍ଗତ ମଧ୍ୟଖଣ୍ଡି ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ୧୯୩୨ ମସିହାରେ ଶ୍ରୀ ଭାଗୀରଥି ଦାସଙ୍କ ନେତୃତ୍ୱରେ ବାଲିଆପାଳ ହାଟରେ ଥିବା ଗଞ୍ଜା, ଅଫିମ ଦୋକାନ ଆଗରେ ପିକେଟିଂ କରି ବିଂଝାରପୁର ଥାନା ଭାରପ୍ରାପ୍ତ ଅଧିକାରୀଙ୍କ ଦ୍ୱାରା ଗିରଫ ହୋଇ ଯାଜପୁର କୋର୍ଟକୁ ଚାଲଣ ହୋଇଥିଲେ । କୋର୍ଟର ଆଦେଶ କ୍ରମେ ୨୦ ଦିନ ହାଜତରେ ରହିବା ପରେ କୋର୍ଟ ବିଚାର କରି କୋର୍ଟ ଉଠିବା ପର୍ଯ୍ୟନ୍ତ ଦଣ୍ଡ ଆଦେଶ ହୋଇଥିଲା । ଦ୍ୱିତୀୟବାର ବାଲିଆପାଳ ହାଟରେ ପିକେଟିଂ କରିବାରୁ ଗିରଫ୍ କରି କନିକା ଜଙ୍ଗଲରେ ଛାଡ଼ି ଦେଇଥିଲେ । ସେଠାରୁ ଆସି କଟକରେ ବିଲାତି ଲୁଗା ବିରୁଦ୍ଧରେ ପିକେଟିଂ କରି ପୋଲିସ୍ ଦ୍ୱାରା ଗିରଫ ହୋଇ ଥାନାରେ ମାଡ଼ଦେଇ ତାଙ୍କୁ ଛାଡ଼ିଦେଇ ଥିଲେ । ପୁନରାୟ ୧୯୪୨ ମସିହାରେ ବିଂଝାରପୁର ଥାନା ଅଫିସର ଗୋଲାପ ଖାଁ ତାଙ୍କୁ ଗିରଫ କରି ଯାଜପୁର ହାଜତକୁ ପଠାଇ ଦେଇଥିଲେ । ତତ୍‌କାଳୀନ ସବ୍‌ଡିଭିଜନ ଅଫିସର ପ୍ରଫୁଲ୍ଲ ଚନ୍ଦ୍ର ତ୍ରିପାଠୀଙ୍କ କୋର୍ଟରେ ବିଚାର ହୋଇ ୩ ମାସ କାରାଦଣ୍ଡ ହୋଇଥିଲା । କଟକ



Digitized by PPRACHIN, SOA

ଜେଲରେ ରହିବା ପରେ ବ୍ରହ୍ମପୁର ଜେଲକୁ ପଠାଇ ଦିଆଯାଇଥିଲା । ଜେଲରୁ ମୁକ୍ତ ହୋଇ ପୁନର୍ବାର ଯାଜପୁରଠାରେ ଗିରଫ ହୋଇ କଟକ ଜେଲରେ ସ୍ପେଶାଲ କୋର୍ଟରେ ମନୀନ୍ଦ୍ର ନାଥ ଗୁହଙ୍କ ଦ୍ୱାରା ୪ ମାସ ସଶ୍ରମ କାରାଦାଣ୍ଡ ଭୋଗ କରିଥିଲେ ।

**ଗଦାଧର ଦତ୍ତ :**

ସା-ବରୁଆଁ, କବୀରପୁର, ଥା-ଯାଜପୁର, ଜି-ଯାଜପୁର, ୧୯୨୯ ମସିହାରେ ସମବାୟ ବିଭାଗରେ କର୍ମଚାରୀ ହିସାବରେ ଥିଲାବେଳେ ଆଣ୍ଠୁ ଉପରେ ଖଦଡ ଲୁଗା ପିନ୍ଧି ଏକ ତାଳପତ୍ର ଛତା ଧରି କଠଉ ମାଡ଼ି ଅଫିସକୁ ଆସିବାରୁ ସମବାୟ ବିଭାଗର ମୁଖ୍ୟ ତାଙ୍କୁ ତିରସ୍କାର କରିବାରୁ ଚାକିରୀ ଛାଡ଼ିବାକୁ ବାଧ୍ୟ ହେଲେ । ଜାତୀୟ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରି ୧୯୩୦ ଓ ୩୨ରେ କଟକ ଓ ପାଟନା କ୍ୟାମ୍ପ ଜେଲରେ ଦୁଇବର୍ଷରୁ ଅଧିକ କାଳ ବନ୍ଦୀ ଜୀବନ କଟାଇଥିଲେ । ସ୍ୱାଧୀନତାପରେ ସେ ଧର୍ମଶାଳା ନିର୍ବାଚନ ମଣ୍ଡଳୀର ବିଧାୟକ ଥିଲେ ।

**ରାମଚନ୍ଦ୍ର ଜେନା :**

ସା. ରାମପୁର, ବରୀ, ଯାଜପୁର । ୧୯୪୨ ମସିହା ଭାରତ ଛାଡ ଆନ୍ଦୋଳନ ବେଳେ ବରୀଠାରେ ଯେଉଁ ଗୁଳିକାଣ୍ଡ ହୋଇଥିଲା ସେଥିରେ ସାନନ୍ଦ, ସାଉଁଟୀ, ମାୟାଧର, ହାଡ଼ିବଂଧୁ ପ୍ରମୁଖଙ୍କର ମୃତ୍ୟୁ ହୋଇଥିଲା । ରାମଚନ୍ଦ୍ର ଗୁଳି କାଣ୍ଡରେ ଆହତ ହୋଇ ଅଳ୍ପକେ ବର୍ତ୍ତିଯାଇଥିଲେ । ତାଙ୍କ ହାତରେ ଏବେ ଗୁଳି ମାଡ଼ର ସ୍ପଷ୍ଟ କ୍ଷତ ଚିହ୍ନ ରହିଛି ।

**ସ୍ୱାଧୀନତା ସଂଗ୍ରାମରେ ସହୀଦ ପୁରୁଷଙ୍କ ନାମ (୧୯୪୨ ମସିହା ଭାରତ ଛାଡ଼ ଆନ୍ଦୋଳନ ):**

**ବରୀବ୍ଲକ :**

| | | | |
|---|---|---|---|
| ୧. ସାନନ୍ଦ ସ୍ୱାଇଁ, | କୃଷ୍ଣନଗର, | ୩. ସାଉଁଟି ମଲିକ, | ଶ୍ରୀରାମପୁର, |
| ୨. ମାୟାଧର ଭୂୟାଁ, | ହାଟସାହି, | ୪. ହାଡ଼ିବନ୍ଧୁ ପଣ୍ଡା, | ହାଟସାହି, । |

**ସ୍ୱାଧୀନତା ସଂଗ୍ରାମୀଙ୍କ ନାମ (ବରୀ-ବ୍ଲକ) :**

| | | | |
|---|---|---|---|
| ୫. ପ୍ରମିଳା ମଲିକ, | ଶ୍ରୀରାମପୁର, | ୬. ଭାଗୀରଥି ଦାସ, | ଆନ୍ଦପୁର, |
| ୭. ଗୋବର୍ଦ୍ଧନ ପ୍ରଧାଣ, | ଅରଙ୍ଗାବାଦ, | ୮. କିରଣ ଲେଖା ଦେବୀ, | ରତଳାଙ୍ଗ, |
| ୯. ଆର୍ତ୍ତବନ୍ଧୁ ମହାନ୍ତି, | ଅରଙ୍ଗାବାଦ, | ୧୦. ଶକୁନ୍ତଳା ଦେବୀ, | ଅଟିରା, |
| ୧୧. ହରପ୍ରିୟା ଦେଈ, | ଅରଙ୍ଗାବଦ, | ୧୨. ସାହୁ ଦ୍ୱିବେଦୀ, | ଅରଙ୍ଗାବାଦ, |
| ୧୩. ବାଉରୀଧର ଦ୍ୱିବେଦୀ, | ଅରଙ୍ଗାବାଦ, | ୧୪. ଦୁଃଶାସନ ରାୟ, | ଅରଙ୍ଗାବାଦ, |
| ୧୫. ବଳରାମ ଧଳ, | ଅରଙ୍ଗାବାଦ | ୧୬. ଅନନ୍ତରାମ ଧଳ, | ଅରଙ୍ଗାବାଦ, |
| ୧୭. ସାହାଜନ ଖାଁ, | ଅରଙ୍ଗାବାଦ, | ୧୮. କିଶୋର ପ୍ରଧାଣ, | ଅରଙ୍ଗାବାଦ, |



Digitized by PPRACHIN, SOA

୧୯. ବୃନ୍ଦାବନ ପ୍ରଧାନ, ଅରଙ୍ଗାବାଦ, ୨୦. ରଘୁନାଥ ନାୟକ, ବରୀ,
୨୧. ହଳଧର ସାହାଣୀ, ପଗିଡା, ୨୨. ଅଭିରାମ ସାହାଣୀ,ପଗିଡା,
୨୩. ମୁନୀନ୍ଦ୍ର ପଣ୍ଡା, ପଗିଡା, ୨୪. ଗଣେଶ ଚନ୍ଦ୍ର ଜେନା,ପଗିଡା,
୨୫. ହରିଶ୍ଚନ୍ଦ୍ର ଦାସ, ରମ୍ପା, ୨୬. ଗଣେଶ ଚନ୍ଦ୍ର ମହାନ୍ତି,ରମ୍ପା,
୨୭, ହାରାମଣୀ ଦେଈ, ରମ୍ପା, ୨୮. କୁମୁନ୍ଦ ଦେଈ, ରମ୍ପା,
୨୯. ଉଷା ଦେଈ, ରମ୍ପା, ୩୦. ରାଜକିଶୋର ମହାନ୍ତି, ଅଟିରା,
୩୧. ରଂଗାଧର ଦାସ, ଅମଠପୁର, ୩୨. ବିରବର ରଥ, ଧାରପୁର,
୩୩. ଦୁଃଶାସନ ଜେନା, ଧାରପୁର, ୩୪. ପ୍ରହ୍ଲାଦ ଜେନା, ଧାରପୁର,
୩୫. ଅର୍ଜୁନ ବେଉରିଆ, ଧାରପୁର, ୩୬. କାର୍ତ୍ତିକଚନ୍ଦ୍ର ମଲ୍ଲ, ଧାରପୁର,
୩୭. ମୁରଲୀଧର ସେଠୀ,ଧାରପୁର, ୩୮. ବାସୁଦେବ ସାମଲ, ବାଲିବିଲ,
୩୯. ରାଧାକୃଷ୍ଣ ସାମଲ, ବାଲିବିଲି, ୪୦. ହରିଚରଣ ଜେନା, ରାମପୁର,
୪୧. ପ୍ରେମଲତା ଦେଈ, ବରୀ, ୪୨. ଗୋବିନ୍ଦ ଚନ୍ଦ୍ର ସାମଲ,ବରୀ,
୪୩. ଦୁର୍ଗାଚରଣ ସାମଲ,ବରୀ, ୪୪. ସୁଶିଳା ଦେଈ, ରାମପୁର,
୪୫, କୃପାସିନ୍ଧୁ ଖୁଣ୍ଟିଆ, ବରୀ, ୪୬. ବ୍ରଜବଂଧୁ ଖୁଣ୍ଟିଆ, ବରୀ,
୪୭. ମୁକ୍ତେଶ୍ୱର ମିଶ୍ର, ଅନ୍ୟାସପୁର, ୪୮. ଖୋକେନ ପାଲିତ,ଅନ୍ୟାସପୁର,
୪୯. ବିରକିଶୋର ରାୟ,କୃଷ୍ଣନଗର, ୫୦. ଇନ୍ଦ୍ର ତ୍ରିପାଠୀ, କୃଷ୍ଣନଗର,
୫୧. ଭିକାରୀ ମହାନ୍ତି, କୃଷ୍ଣନଗର, ୫୨. ହଳଧର ଦାସ, କୃଷ୍ଣନଗର,
୫୩. ଦୟାମଣି ସାମଲ, କୃଷ୍ଣନଗର, ୫୪. ବେଣୁଧର ସାମଲ,କୃଷ୍ଣନଗର,
୫୫. ତ୍ରିଲୋଚନ ମହାନ୍ତି,କୃଷ୍ଣନଗର, ୫୬. ଧ୍ରୁବଚରଣ ରାୟ, କୃଷ୍ଣନଗର,
୫୭. ହୃଷିକେଶ ରାୟ, କୃଷ୍ଣନଗର, ୫୮. ବିଦ୍ୟାଧର ରାୟ, କୃଷ୍ଣନଗର,
୫୯. ମୁରଲୀଧର ରାୟ, କୃଷ୍ଣନଗର, ୬୦. ଡମ୍ବରୁଧର ରାୟ, କୃଷ୍ଣନଗର,
୬୧. ଅନାମ ଚରଣ ଦାସ, କୃଷ୍ଣନଗର, ୬୨. ବିଚିତ୍ରାନନ୍ଦ ଶୁକ୍ଳ, କୃଷ୍ଣନଗର,
୬୩. ସୁରେନ୍ଦ୍ରନାଥ ଶୁକ୍ଳ, କୃଷ୍ଣନଗର, ୬୪. ରସାନନ୍ଦ ଶୁକ୍ଳ, କୃଷ୍ଣନଗର,
୬୫. କପିଳ ଚରଣ ଶୁକ୍ଳ,କୃଷ୍ଣନଗର, ୬୬. ନିଧିରାମ ସାମଲ, କୃଷ୍ଣନଗର,
୬୭. ବାଞ୍ଛାନିଧି ଦାସ, ବାଙ୍ଗଶିରିଆ, ୬୮. ହୃଷିକେଶ ସାମଲ,ହଳଦୀବସନ୍ତ,
୬୯. ନୃସିଂହଚରଣ ସାମଲ,ହଳଦୀବସନ୍ତ,୭୦. କପିଳ ଚରଣ ଜେନା, ହଳଦୀବସନ୍ତ,
୭୧. ମଧୁସୂଦନ ଦାସ, ଅଲିଆବାଦ, ୭୨. ଦେବେନ୍ଦ୍ରନାଥ ପାଢ଼ୀ, ରତ୍ନଗିରି,
୭୩. ଜଗବନ୍ଧୁ ଜେନା, ରତ୍ନଗିରି, ୭୪. ମଗେଇ ମଳିକ, ରତ୍ନଗିରି,
୭୫. ନିତ୍ୟାନନ୍ଦ ଜେନା, ବିଂଝାରପୁର, ୭୬. ବୁଲ ଜେନା, ବେଂକରାପୁର,
୭୭. ଜଗନ୍ନାଥ ଜେନା, କଂପଗଡ଼, ୭୮. ମହେଶ୍ୱର ଘଡାଇ, ଶୁକଳ,



Digitized by PPRACHIN, SOA

୭୯. ନୀଳମଣି ଦାସ, ଶୁକଳ, ୮୦. ଭଗବାନ ଦାସ, ଶୁକଳ,
୮୧. ଅକ୍ରୁର ଚରଣ ଜେନା,ହଳଦିଆ, ୮୨. ଫକିର ଚରଣ ଜେନା,ହଳଦିଆ,
୮୩. ରତ୍ନାକର ଜେନା, ହଳଦିଆ, ୮୪. ଯଦୁନାଥ ଜେନା, ହଳଦିଆ,
୮୫. କାଶିନାଥ ଜେନା, ହଳଦିଆ, ୮୬. ଅର୍ଜୁନ ଜେନା, ହଳଦିଆ,
୮୭. ବନବିହାରୀ ଦାସ, ଇଛାପୁର, ୮୮. ସୁରେନ୍ଦ୍ର ଦାସ, ବାଗଦା,
୮୯. ହରିସାହୁ, ମନ୍ଦାରି ।

(ଏମାନେ ପୁଣ୍ୟାତ୍ମା ଗୋପବନ୍ଧୁ ଚୌଧୁରୀ ମା' ରମା ଦେବୀ, ଶରତ ଚନ୍ଦ୍ର ମହାରଣାଙ୍କ ପ୍ରେରଣାରେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ)

**ବଡ଼ଚଣା ବ୍ଲକ :**

୧. ✓ କୃଷ୍ଣମୋହନ ରାଉତରାୟ,ତିଗିରିଆ, ୨. ✓ବୃନ୍ଦାବନ ତ୍ରିପାଠୀ, ବାଲିପଡିଆ,
୩. ପୂର୍ଣ୍ଣଚନ୍ଦ୍ର ତ୍ରିପାଠୀ, ବାଲିପଡିଆ, ୪. ଅଲେଖ ପ୍ରସାଦ ଦାସ,କଳକଳା,
୫. ✓ ସାରଙ୍ଗଧର ସାମଲ,ବାଲିପଡ଼ିଆ, ୬. ରାଘବ ଚରଣ ଜେନା,ମୃଷାଟିକିରୀ,
୭. ରତ୍ନନିଧି ମହାପାତ୍ର, ମୃଷାଟିକାରୀ, ୮. ✓ ହଳଧର ମହାପାତ୍ର,କୋଲଣଗିରି,
୯. ଶ୍ରୀ ରତ୍ନାକର ମଲ୍ଲିକ, କୋଇଣଗିରି, ୧୦. ସୁନାମଣି ମହାପାତ୍ର, କୋଲଣଗିରି,
୧୧. ✓ ରଙ୍ଗାଧର ମହାପାତ୍ର, ମୃଷାଟିକିରୀ, ୧୨. ✓ ବାଞ୍ଛାନିଧି ମହାପାତ୍ର, ମୃଷାଟିକିରୀ,
୧୩. ✓ ଲକ୍ଷ୍ମୀଧର ମହାପାତ୍ର, ମୃଷାଟିକିରୀ, ୧୪. ✓ ହଳଧର ମହାପାତ୍ର, ମୃଷାଟିକିରୀ,
୧୫. ✓ ଗୁରୁଚରଣ ମହାପାତ୍ର,ମୃଷାଟିକିରୀ, ୧୬. ବ୍ରହ୍ମାନନ୍ଦ ମହାପାତ୍ର, ମୃଷାଟିକିରୀ,
୧୭. ✓ ଦୁର୍ଯ୍ୟୋଧନ ମହାପାତ୍ର, ମୃଷାଟିକିରୀ, ୧୮. ✓ ମାଗୁଣି ସେନାପତି, ରାମଦାସପୁର,
୧୯. ✓ ଗଣି ସେନାପତି, ରାମଦାସପୁର, ୨୦. ✓ ଶଙ୍କର ସେନାପତି, ରାମଦାସପୁର,
୨୧. ଚରଣ ସେନାପତି, ରାମଦାସପୁର, ୨୨. ନବଘନ ପ୍ରଧାନ, ଖଡ଼ଗପୁର,
୨୩. ବସନ୍ତ କୁମାର ପରିଡା,ପଲାଇ, ୨୪. ଭୋଳାନାଥ ମହାନ୍ତି,ତିଗିରିଆ,
୨୫. ରାତ୍ନାକର ରାଉତରାୟ,ତିଗିରିଆ, ୨୬. ବିଚିତ୍ରାନନ୍ଦ ରାୟ, ସାଉଡ଼ିଆ,
୨୭. ରୁପଚରଣ ରାୟ, ସାଉଡ଼ିଆ, ୨୮. କୃପାସିନ୍ଧୁ ରାୟ, ବନମାଳିପୁର,
୨୯. ବିଶ୍ୱନାଥ ପଣ୍ଡା, ଦାନପୁର ୩୦. ✓ ଈଶ୍ୱର ଚନ୍ଦ୍ର ଜେନା, ଗଜେନ୍ଦ୍ରପୁର,
୩୧. ✓ ରସାନନ୍ଦ ଶାନ୍ତି, ଗଜେନ୍ଦ୍ରପୁର, ୩୨. ✓ ଆଦିକନ୍ଦ ଜେନା,ଗଜେନ୍ଦ୍ରପୁର,
୩୩. ଜଗନ୍ନାଥ ମାନ୍ଧାତା, ବନ୍ଦରେଶ୍ୱର, ୩୪. ଅଭିମନ୍ୟୁ ମହାପାତ୍ର, ମୃଷାଟିକିରୀ,
୩୫. ✓ ବେଣୁଧର ମହାପାତ୍ର, ମୃଷାଟିକିରୀ, ୩୬. ✓ ଇନ୍ଦ୍ରମଣି ମହାପାତ୍ର, ମୃଷାଟିକିରୀ,
୩୭. ✓ ଅଦ୍ୱୈତ ମହାପାତ୍ର, ମୃଷାଟିକିରୀ,୩୮. ✓ ଦୁର୍ଯ୍ୟୋଧନ ମଲ୍ଲିକ, ମୃଷାଟିକିରୀ,
୩୯. ✓ ଗଣି ମଲ୍ଲିକ, ମୃଷାଟିକିରୀ, ୪୦. ✓ ତିଳ ମଲ୍ଲିକ, ବାଲିପଡ଼ିଆ,



Digitized by PPRACHIN, SOA

୪୧. ✓ ନୀଳମଣି ମଳିକ, ବାଲିପଡ଼ିଆ, ୪୨. ✓ ହରି ବାରିକ, ବାଲିପଡ଼ିଆ,
୪୩. ପ୍ରହ୍ଲାଦ ପ୍ରଧାନ, ବାଲିପଡ଼ିଆ, ୪୪. ତ୍ରିଲୋଚନ ପ୍ରଧାନ,ବାଲିପଡ଼ିଆ,
୪୫. ବୈଲୋଚନ ପ୍ରଧାନ, ବାଲିପଡ଼ିଆ, ୪୬. ଗୋଲକ ପ୍ରଧାନ, ବାଲିପଡ଼ିଆ,
୪୭. ନୀଳମଣି ସାମଲ, ବାଲିପଡ଼ିଆ, ୪୮. ✓ ଦୁଃଶାସନ ଧଳ,ବରଦା,
୪୯. ✓ ବୀରବର ସାମନ୍ତରାୟ,ମହାକାଳପଡ଼ା, ୫୦. ✓ ଦୂର୍ଯ୍ୟୋଧନ ସାମଲ, ଭରତପୁର,
୫୧. ✓ ଜଗବନ୍ଧୁ ସମାଲ, ଭରତପୁର, ୫୨. ଦୈତାରୀ ସାମଲ, ଭରତପୁର,
୫୩. ବଳରାମ ସାମଲ, ଭରତପୁର, ୫୪. ✓ ପ୍ରହ୍ଲାଦ ସ୍ୱାଇଁ, ଜନକ,
୫୫. ✓ ଦୁର୍ଯ୍ୟୋଧନ ସ୍ୱାଇଁ, ଜନକ, ୫୬. ✓ କୈଳାସଚନ୍ଦ୍ର ଜେନା, ଜନକ,
୫୭. ✓ ଦୟାନିଧି ସାହେବ, ବନମାଳୀପୁର, ୫୮. ଅଚ୍ୟୁତାନନ୍ଦ ଶତପଥୀ, ବନମାଳୀପୁର,
୫୯. ✓ ଅଭିରାମ ପଣ୍ଡା, ପାଥପୁର, ୬୦. ✓ ମଣି ସେନାପତି, ରାମଦାସପୁର,
୬୧. ନିଶାକର ହୋତା, ନୂଆଶାସନ ବଡ଼ଚଣା,
୬୨. ଲକ୍ଷ୍ମୀଧର ଷଡ଼ଙ୍ଗୀ, ଖଇରା,
୬୩. ✓ ପଦ୍ମଲାଭ ମିଶ୍ର, ନୂଆଶାସନ, ୬୪. ✓ ଅଭିରାମ ଦାଶ,କଡ଼େଇଶାସନ,
୬୫. ବିଶ୍ୱମ୍ଭର ସାମଲ, ବନମାଳୀପୁର, ୬୬. ପୁରୁଷୋତ୍ତମ ପ୍ରଧାନ, ବାଲିପଡ଼ିଆ,
୬୭. ✓ ଶ୍ୟାମ ମହାପାତ୍ର,କୋଲଣଗିରି, ୬୮. ✓ବଂଶୀଧର ମହାପାତ୍ର, କୋଲଣଗିରି,
୬୯. ✓ ରଘୁନାଥ ପରିଡ଼ା, ବରପଦା, ୭୦. ବାଲକୃଷ୍ଣ ଶୁକ୍ଳ, ଚଣ୍ଡୀତଳ ତେଲିଗଡ଼,
୭୧. ବାବାଜୀ ବେହେରା, ଦର୍ପଣୀ, ୭୨. ✓ ବୃନ୍ଦାବନ ଷଡ଼ଙ୍ଗୀ, ଛତିଆ
୭୩. ✓ ଦୁର୍ଯ୍ୟୋଧନ ରାଉତ,ବରୁଣିଆ, ୭୪. ✓ ଜଳଧର,ବରି-ଠେଙ୍ଗଡ଼ି,
୭୫. ପୁରନ୍ଦର ମହାପାତ୍ର, କୋଲଣଗିରି, ୭୬. ✓ ଦାଶରଥି ସାମଲ, ଭରତପୁର ।

## ଧର୍ମଶାଳା ବ୍ଲକ :

୧. ✓ ଇନ୍ଦ୍ରମଣି ଜେନା, କୋତପୁର, ୨. ଧ୍ରୁବଚରଣ ଜେନା, କୋତପୁର,
୩. ନିର୍ମଳ ଜେନା, କୋତପୁର, ୪. ଯୁଧିଷ୍ଠିର ଜେନା, କୋତପୁର,
୫. କୁଳମଣି ଜେନା, କୋତପୁର, ୬. ସନାତନ ଜେନା, କୋଟପୁର,
୭. ବାଞ୍ଛାନିଧି ସାମଲ, କୋତପୁର, ୮. ✓ ରଘୁମଣି ଜେନା, କୋଟପୁର,

❒❒❒




ସୌଜନ୍ୟ
ରମାକାନ୍ତ ଜେନା
ମହେଶ୍ୱର ବଳ



Digitized by PPRACHIN, SOA

# ଯାଜପୁରର ସୁ-ପୁରଷମାନେ

## ସନ୍ଥ ସାଧକ ପର୍ଶୁରାମ ବିହାରୀ : (୧୫୫୦-୧୬୫୦)

ସନ୍ଥ ସାଧକ ପର୍ଶୁରାମ ବିହାରୀ ଯାଜପୁର ଜିଲ୍ଲାର କଳାଶ୍ରୀ ଗୋପାଳପୁର ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଶୁକଦେବ ବିହାରୀ ଆଉ ମାତାଙ୍କ ନାମ ଥିଲା ବିମଳା ଦେବୀ । ଓଡିଆ ସାହିତ୍ୟର ସମାଲୋଚକମାନେ ତାଙ୍କୁ ସପ୍ତଦଶ ଶତାବ୍ଦୀର କବି ଭାବରେ ଗ୍ରହଣ କରିଥିଲେ ହେଁ ପ୍ରକୃତରେ ସେ ପଞ୍ଚସଖାଙ୍କ କିଞ୍ଚିତ୍ ପରବର୍ତ୍ତୀ ପର୍ଯ୍ୟାୟର କବିଥିଲେ । ତେବେ ସେ ଖ୍ରୀଷ୍ଟାୟ ୧୫୫୦ ରୁ ୧୬୫୦ ଭିତରେ ଜୀବିତ ଥିଲେ । ଉତ୍କଳୀୟ ବୈଷ୍ଣବ ଧର୍ମର ଜଣେ ପ୍ରବକ୍ତା ଭାବରେ ସେ ଓଡିଶାର ବିଭିନ୍ନ ସ୍ଥାନରେ ବୈଷ୍ଣବ ଧର୍ମ ପ୍ରଚାର କରିବା ସଙ୍ଗେ ସଙ୍ଗେ ଆଶ୍ରମମାନ ସ୍ଥାପନ କରିଥିଲେ । ଜଣେ ମାନବବାଦୀ ସନ୍ଥ ସାଧକ ଭାବରେ କେବଳ ନୁହଁନ୍ତି ଜଣେ ବୈଷ୍ଣବ କବି ଭାବରେ ସେ ସମଗ୍ର ଓଡିଶାରେ ପରିଚିତ । ତାଙ୍କ ଲିଖିତ ''ବ୍ରହ୍ମଗୀତା'', ''ଜ୍ଞାନଗୀତା'', ''ବ୍ରହ୍ମଜ୍ଞାନ ଗୀତା'', ''ପରଚେ ଗୀତା'', ''ଆତ୍ମ ପରଚେ ଗୀତା'', ''ଶ୍ରେଣୀ ନିର୍ଣ୍ଣୟ ଗୀତା'', ''ମହାଗିରି ବର୍ଣ୍ଣନା'', ''ଭଗବତ ଗୀତା'' ର ଅନୁବାଦ, ଗୋ ଶାସ୍ତ୍ର ଗ୍ରନ୍ଥ ଭିନ୍ନ ''କପିଳା ବୋଲିଣ ଗାଇସେ ସଦା ସର୍ବଦା ଯୁବା'', ଅଧିକା ବୋଇଲେ ଦୂତୀ ଗୋ ମୋତେ ଜର କରିଛି, ହରେ ରାମ କୃଷ୍ଣଙ୍କୁ ନିଜ ସୁମନ, ଚାହୁଁମନ ଶରଣ ପଞ୍ଜର ବେନି ବାହାକୁ, ଗାଇ ଗୋଟି ଅଟେ ମୋର, ମଦମତ୍ତ ଦୁଲାଳ ଗାଇ, ବୋହୁ ଚାଲି ନ ଯାଣଇ ଲୋ ଆଦି ଶତ ଶତ ଭଜନ, ଜଣାଣ, ସ୍ତୁତି ଗୀତିକା ଆଦି ସମଗ୍ର ଓଡ଼ିଶାରେ ତାଙ୍କୁ ''ଭକ୍ତ କବି ବିହାରୀ ଗୋସାଇଁ'' ଆଖ୍ୟା ପ୍ରଦାନ କରିଛନ୍ତି ।

ବୈଷ୍ଣବ ଶାସ୍ତ୍ରଗୁଡିକୁ ଅଧ୍ୟୟନ କରି ଅତି ସରଳ ଭାଷାରେ ସେ ଗ୍ରାମାଞ୍ଚଳର ଲୋକ ମାନଙ୍କୁ ବୁଝାଉଥିଲେ । ତାଙ୍କର ବହୁ ଶିଷ୍ୟ ବଂଶ ପରମ୍ପରା କ୍ରମେ ଓଡିଶାର ବିଭିନ୍ନ ସ୍ଥାନରେ ବାସ କରୁଅଛନ୍ତି । ପବିତ୍ର ଚିତାଲାଗି ଅମାବାସ୍ୟା ତିଥିରେ ତାଙ୍କର ମହାପ୍ରୟାଣ ଘଟିଥିଲା । ତାଙ୍କର ସମାଧି ଏ ଅଞ୍ଚଳର ଏକ ପୂଣ୍ୟ ମହାପୁରଷ ପୀଠ ଭାବେ ପ୍ରସିଦ୍ଧ ଲାଭ କରିଛି ।

**ଅଭିମନ୍ୟୁ ସାମନ୍ତ ସିଂହାର : (୧୭୫୭-୧୮୦୬)**

କାବ୍ୟଯୁଗର ଅନ୍ୟତମ ରସିକଭକ୍ତ, କବିତିଳକ । ବିଦଗ୍ଧ କବି ଅଭିମନ୍ୟୁ ସାମନ୍ତ ସିଂହାର ଯାଜପୁର ଜିଲ୍ଲାର ବାଲିଆ ଗ୍ରାମରେ ୧୭୫୭ ମସିହା ପବିତ୍ର ମାଘ ସପ୍ତମୀ



Digitized by PPRACHIN, SOA



ତିଥିରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଥିଲା ଇନ୍ଦ୍ରଜିତ ସାମନ୍ତ ସିଂହାର । ବାଲିଆର ଜମିଦାର ବଂଶରେ ଜନ୍ମ ହୋଇ ଭୋଗବିଳାସ ପ୍ରତି ତାଙ୍କର ଆସକ୍ତି ନ ଥିଲା ବରଂ ରାଧା-କୃଷ୍ଣ ପ୍ରେମ ଲୀଳାର ନୈସର୍ଗିକ ଚିତ୍ର ବର୍ଣ୍ଣନାରେ ସେ ହୋଇଥିଲେ ପ୍ରମତ୍ତ । ସଦାନନ୍ଦ କବି ସୂର୍ଯ୍ୟବ୍ରହ୍ମାଙ୍କ ଭଳି ବହୁ ବିଦ୍ୱାନ ମନିଷୀଙ୍କ ସହଚାର୍ଯ୍ୟ ଲାଭ ସହିତ ଅଶିରାଶି ଗ୍ରନ୍ଥ ଅଧ୍ୟୟନ ତାଙ୍କୁ ସାହିତ୍ୟ ରଚନା ପାଇଁ ପ୍ରେରଣା ଦେଇଥିଲା । କାବ୍ୟର କାନ୍ତି, ଲାଳିତ୍ୟ, ଉପମା, ଅର୍ଥଗୌରବ, ଶବ୍ଦ ଚାତୁର୍ଯ୍ୟ, ରସବୋଧ, ଅଳଙ୍କାର ପାଟବତା, ପାଣ୍ଡିତ୍ୟ, ଭକ୍ତିମତ୍ତା ସବୁ ଯେମିତି ସେ ଏକାକାର କରି ନିଜ କାବ୍ୟ କୋଣାର୍କ ଗଠନ କରିଥିଲେ । ବାଲ୍ୟକାଳରୁ ବାଘଗୀତ, ଚଢ଼େଇ ଗୀତ, ବୋଲେ ହୁଁ ଗୀତ ରଚନା କରିବା ପରେ ସେ ରଚନା କରିଥିଲେ ‘‘ପ୍ରେମ ଚିନ୍ତାମଣି’’, ‘‘ସୁଲକ୍ଷଣା’’, ‘‘ରସବତୀ’’, ‘‘ପ୍ରେମକଳା’’, ‘‘ପ୍ରେମତରଙ୍ଗିଣୀ’’, ‘‘ପ୍ରୀତି ଚିନ୍ତାମଣି’’, ଆଉ ‘‘ବିଦଗ୍ଧ ଚିନ୍ତାମଣି’’ ପରି ଅମୂଲ୍ୟ ଗ୍ରନ୍ଥ । ଯାହା ଉପେନ୍ଦ୍ର ଭଞ୍ଜଙ୍କ ପରେ ଓଡ଼ିଆ କାବ୍ୟ ସାହିତ୍ୟରେ ଆଉ କେହି ସୃଷ୍ଟି କରିବାକୁ ଜନ୍ମଗ୍ରହଣ କରିନାହାନ୍ତି । ସମଗ୍ର ଭାରତୀୟ ବୈଷ୍ଣବ ଶାସ୍ତ୍ରରେ ବିଦଗ୍ଧ ଚିନ୍ତାମଣି ଏକ ମଣିଦୂଲ୍ୟ ଅଦ୍ୟାବିଧି ଜାଜ୍ୱଲ୍ୟମାନ ହୋଇ ରହିଛି । କବିଙ୍କ ଶତ ଶତ ଭଜନ, ଜଣାଣ, ଗାଡିକା ଚଉତିଶା ମଧ ତାଙ୍କୁ ଓଡିଆ କାବ୍ୟ ସାହିତ୍ୟରେ ଅମର କରି ରଖିଛି । ଖ୍ରୀ ୧୮୦୬ ମସିହା ରଜ ସଂକ୍ରାନ୍ତି ତିଥିରେ ସେ ଦିବ୍ୟ ପଥର ଯାତ୍ରୀ ହୋଇଥିଲେ ।


କବିଙ୍କ ସମାଧି ପୀଠ

**ଆଦିନେତା ବିଚିତ୍ରାନନ୍ଦ ଦାସ :**

ଯାଜପୁର ଜିଲ୍ଲା ମଙ୍ଗଳପୁର ଥାନା ଅନ୍ତର୍ଗତ କଣ୍ଡାବଣିଆ ଗାଁରେ ଆଦିନେତା ବିଚିତ୍ରାନନ୍ଦ ଦାସଙ୍କ ଜନ୍ମ । ନଅଙ୍କ ଦୁର୍ଭିକ୍ଷ ସମୟରେ ତାଙ୍କର ସେବାର ତୁଳନା ନାହିଁ । କଟକରେ ପ୍ରଥମେ ତାଙ୍କ ଦ୍ୱାରା ଘୋଡ଼ାଗାଡ଼ି ଟଣା ପ୍ରଚଳନ ହୋଇଥିବା କୁହାଯାଏ । ରେଭେନ୍ସା ମହାବିଦ୍ୟାଳୟ ପ୍ରତିଷ୍ଠା କ୍ଷେତ୍ରରେ ତାଙ୍କର ମଧ ଅବଦାନ ରହିଛି । ମହାତ୍ମା ଗାନ୍ଧୀଙ୍କ ପୂର୍ବରୁ ଛୁଆଁ-ଅଛୁଆଁ ଭେଦଭାବ ଭୁଲି କାର୍ଯ୍ୟକରିବା ପାଇଁ ସେ ପ୍ରେରଣା ଦେଇଥିଲେ ।



Digitized by PPRACHIN, SOA

**ଉତ୍କଳପ୍ରାଣ ବ୍ରଜସୁନ୍ଦର ଦାସ :**

ଉତ୍କଳର ଅନ୍ୟତମ ବରପୁତ୍ର ବ୍ରଜସୁନ୍ଦର ଦାସଙ୍କ ଜନ୍ମ ମଧ ଜଣ୍ଡାବଣିଆରେ । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନଠାରୁ ସାମ୍ବାଦିକତା ଓ ସାହିତ୍ୟର ପ୍ରସାର ଦିଗରେ ତାଙ୍କ ଦ୍ୱାରା ପ୍ରତିଷ୍ଠିତ 'ମୁକୁର' ସାହିତ୍ୟ ପତ୍ରିକାର ଅବଦାନ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଥିଲା । ଏହି ଦୁଇ ବର ପୁତ୍ରଙ୍କ ସ୍ମୃତିରକ୍ଷା ପାଇଁ ରାଜ୍ୟସରକାର ଉଦ୍ୟମ କରିବା ଉଚିତ୍ ବୋଲି ସାଧାରଣରେ ମତପ୍ରକାଶ ପାଉଛି ।

**ସ୍ୱାଧୀନତା ସଂଗ୍ରାମୀ ରାମକୃଷ୍ଣ ସାମନ୍ତ ସିଂହାର :**

ଅଭିମନ୍ୟୁ ସାମନ୍ତ ସିଂହାରଙ୍କ ଦାୟାଦ ଭାବେ ରାମକୃଷ୍ଣ ସାମନ୍ତ ସିଂହାର ଓଡିଶାର ଗୌରବ ପ୍ରତିଷ୍ଠା ଦିଗରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ୧୮୫୭ ଖ୍ରୀ.ର ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ସୁରେନ୍ଦ୍ର ସାଓ, ରାଜା ଅର୍ଜୁନ ସିଂହ ପରି ବାଲିଆର ରାମକୃଷ୍ଣ ସାମନ୍ତ ସିଂହାର ମଧ ଇଂରେଜମାନଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ରାଜସ୍ୱ ଦେବା ବନ୍ଦ କରିବା, ପ୍ରଜା ମେଳି କରିବା, ଅସ୍ତ୍ରଶସ୍ତ୍ର ସଂଗ୍ରହ କରିବା ହେତୁ ସେ ରାଜବନ୍ଦୀ ହେବା ସଙ୍ଗେ ସଙ୍ଗେ ତାଙ୍କର ସମସ୍ତ ସମ୍ପତ୍ତି ହରାଇ ଥିଲେ । ତାଙ୍କର ସହଯୋଗୀଭାବେ ଦିନବନ୍ଧୁ ମହାପାତ୍ର ଏବଂ ଉପେନ୍ଦ୍ର ଜେନା ମଧ କାରାବରଣ କରିଥିଲେ । ବାଲିଆ ଭଳି ଏକ ଅନୁନ୍ନତ ଅଞ୍ଚଳରେ ଗଢ଼ି ଉଠିଥିବା ବିଭିନ୍ନ ଚଉପାଢ଼ୀ, ମାହଲ, ଟପା, ଆଦିର ଖଣ୍ଡାୟତ ବୀରମାନେ ଇଂରେଜମାନଙ୍କ ବିରୁଦ୍ଧରେ ସ୍ୱରଉତ୍ତୋଳନ କରିବା କିଛି କମ୍ କଥା ନୁହେଁ ।

ଓଡ଼ିଶା ମାଟିରେ ୧୮୫୭ ସାଲର ବିଦ୍ରୋହର ପ୍ରଥମ ଝଲକ ରାମକୃଷ୍ଣ ସାମନ୍ତ ସିଂହାରଙ୍କ ନେତୃତ୍ୱରେ ବାଲିଆଠାରେ ଦେଖିବାକୁ ମିଳିଥିଲା ।

**କବି ମଞ୍ଜୁଳ କୃଷ୍ଣ ପ୍ରସାଦ ବସୁ** (୧୮୯୪-୧୯୬୮)

କବି ମଞ୍ଜୁଳ କୃଷ୍ଣ ପ୍ରସାଦ ବସୁ ଓଡ଼ିଶାର ସାଂସ୍କୃତିକ ଇତିହାସର ଜଣେ ସ୍ମରଣୀୟ ନାମ । ଚଳିତ ଶତାବ୍ଦୀର ଦ୍ୱିତୀୟ ଦଶକଠାରୁ ଷଷ୍ଠ ଦଶକ ଯାଏ ପ୍ରାୟ ପଚାଶ ବର୍ଷ ସେ ବିଭିନ୍ନ ଦିଗରୁ ଆମ ଭାଷା ସାହିତ୍ୟକୁ ସମୃଦ୍ଧ କରି ଯାଇଛନ୍ତି । ଜଣେ ସଫଳ ନାଟ୍ୟକାର, ଗୀତିକାର, ଅନୁବାଦକ, ଗାଳ୍ପିକ, ପ୍ରାବନ୍ଧିକ, ଔପନାସିକ, ଗାୟକ, ଅଭିନେତା, ସଙ୍ଗୀତଜ୍ଞ, ଯନ୍ତ୍ରଶିଳ୍ପୀ, ସଙ୍ଗଠକ, ପରିଚାଳକ, ନିର୍ଦ୍ଦେଶକ, ଓସ୍ତାଦ, ଶିକ୍ଷକ ତଥା ସାରସ୍ୱତ ସାଧକ ଭାବରେ ସେ ବେଶ୍ ପ୍ରତିଷ୍ଠିତ । କେବଳ ସେତିକି ନୁହେଁ, ସେ ଭାରତମାତାକୁ ବିଦେଶୀ କବଳରୁ ମୁକ୍ତ କରିବାକୁ ଛାତ୍ର ଜୀବନରେ ସଂଗ୍ରାମ ତଥା ତା'ଙ୍କ ରଚିତ ନାଟକରେ ଜନ ମାନସରେ ପ୍ରଭାବ ପକେଇବା ପାଇଁ ମୁକ୍ତି ସଙ୍ଗୀତ ରଚନା କରି ଜଣେ ସ୍ୱାଧୀନକାମୀ ମଣିଷ ଭବିରେ ବେଶ୍ ସୁପରିଚିତ ହୋଇଛନ୍ତି । ତା'ଙ୍କ ପିତାଙ୍କ ନାମ ଗୋବିନ୍ଦ ପ୍ରସାଦ ବସୁ ଓ ମାତାଙ୍କ ନାମ ବିଷ୍ଣୁ ପ୍ରିୟା । ଦେବୀ ଛାତ୍ରାବସ୍ଥାରେ କୃଷ୍ଣ ପ୍ରସାଦଙ୍କ ଠାରେ ସାହିତ୍ୟ ପ୍ରତିଭା ଦେଖିବାକୁ ମିଳିଥିଲା । ସେ



Digitized by PPRACHIN, SOA



ହରି ଅନ୍ୱେଷଣ' ନାଟକ ରଚନା କରି ପ୍ରଥମେ ଅଭିନୀତ କରେଇଥିଲେ । ସେ ୧୯୧୪ ମସିହାରେ କଲିକତାର ସେଣ୍ଟଜାଭୟରସ୍ କଲେଜରୁ ପ୍ରଥମ ଶ୍ରେଣୀରେ ଆଇ. ଏସ୍. ସି ପାଶ୍ କଲେ । ସେଇଠି ବି. ଏସ୍. ସି ପଢ଼ିବା ସମୟରେ ଦେଶ ପ୍ରେମରେ ଉଦ୍‌ବୁଦ୍ଧ ହୋଇ ବନ୍ଦେ ମାତ୍‌ରମ' ବିପ୍ଳବୀ ଦଳରେ ଯୋଗ ଦେଇଥିଲେ । ଫଳରେ କୃଷ୍ଣ ପ୍ରସାଦ ଚାକିରୀର ସ୍ୱପ୍ନ ପରିତ୍ୟାଗ କରିଥିଲେ ।

ସେ ଓଡ଼ିଆ ଅପେରା ସାହିତ୍ୟ ପାଇଁ ୨୩ଟି ନାଟକ, ପାଲା ସାହିତ୍ୟ ପାଇଁ ୩୬ଟି ଖଣ୍ଡ କାବ୍ୟ, ୫ଟି ପ୍ରବନ୍ଧ ଗ୍ରନ୍ଥ, ୨ଟି ଉପନ୍ୟାସ, ୩ଟି ଅନୁବାଦ ଗ୍ରନ୍ଥ, ସହସ୍ରାଧିକ ସଙ୍ଗୀତ, ଗୀତି-କବିତା, ୨୭ଟି ଗ୍ରାମୋଫୋନ୍ (H.M.V) ରେକର୍ଡର ଗାୟକ, ଗୀତିକାର, ନର୍ଦ୍ଦେଶକ, ଆଖଡା ଘରେ ବୈଠକ' ଏ ଫରୁଆ ଚୁଟି' ଭଳି ଉପାଦେୟ ଲଳିତ ନିବନ୍ଧ ରଚନା କରିଯାଇଅଛନ୍ତି । ତାଙ୍କ ରଚିତ ନିକୁମ୍ଭିଲା, ବ୍ରାହ୍ମଣ, ବାମନାବତାର, ଅଛୁଆଁ ଝିଅ, ଗାନ୍ଧୀ ଚରିତ, ପାତକୀ, ପାଦୁକା, ହରିଶ୍ଚନ୍ଦ୍ର, ବଭ୍ରୁବାହନ, ନଳ ଦମୟନ୍ତୀ, ସାବିତ୍ରୀ, ଜନ୍ମାଷ୍ଟମୀ, କବିନର୍ତ୍ତକୀ, ଗୌର ଗାଥା, ଦେବବ୍ରତ, ଚଣ୍ଡାଶୋକ, ଦେବଯାନୀ, ପ୍ରଣତି, ପାଲାକାବ୍ୟ ଓଡ଼ିଆ ସାହିତ୍ୟର ଅମୂଲ୍ୟ ସଂପଦ । ତାଙ୍କ ନାଟକ ମଧ୍ୟରେ ଯଯାତି କେଶରୀ, କୃଷ୍ଣ ଚରିତ, ତପସ୍ୱୀ, ରାମ ବନବାସ, ହରି ଅନ୍ୱେଷଣ ପ୍ରଣତି ପ୍ରଧାନ ।

ମୟୂରଭଞ୍ଜର ମହାରାଜ ପୂର୍ଣ୍ଣଚନ୍ଦ୍ର ଭଞ୍ଜ ତାଙ୍କ କବି ପ୍ରତିଭାରେ ମୁଗଧ୍ ହୋଇ 'ଉତ୍କଳ ଗନ୍ଧର୍ବ' ଏ ଥାଳି ରାଜା ବ୍ରଜ ସୁନ୍ଦର ଦେବ 'କବି ମଞ୍ଜୁଳ' ଉପାଧିରେ ଭୂଷିତ କରିଥିଲେ । ୧୯୬୧ ମସିହାରେ 'ଆଖଡ଼ା ଘରେ ବୈଠକ' ପରେ ଏକ ହାସ୍ୟରସ, ନୀତି ଓ ଆଦର୍ଶ ପରିପୂର୍ଣ୍ଣ ଧାରାବାହିକ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀରୁ ଏକ ମାନପତ୍ର ଲାଭ କରିଥିଲେ ।

କବି ମଞ୍ଜୁଳ କୃଷ୍ଣ ପ୍ରସାଦ ୧୯୬୮ ମସିହା ଅଗଷ୍ଟ ମାସ ୧୮ ତାରିଖରେ ପରଲୋକ ଗମନ କରିଥିଲେ । ଓଡ଼ିଆ ନାଟ୍ୟ ସାହିତ୍ୟର ସମୃଦ୍ଧି ଲାଗି ତାଙ୍କର ଦାନ ଚୀର ସ୍ମରଣୀୟ । ତାଙ୍କ ଲାଗି ତାର ଜନ୍ମଭୂମି ଯାଜପୁର ଜିଲ୍ଲାର କୁଆଁସରପୁର କାହିଁକି ସାରା ଓଡ଼ିଶା ଗର୍ବିତ ।

❑ ❑ ❑



ସୌଜନ୍ୟ
**ଡଃ ରବିନ୍ଦ୍ର ବିହାରୀ**
ଅଭିମନ୍ୟୁ ସାମନ୍ତ ସିଂହାର
କଲେଜ, ବାଲିଆ



Digitized by PPRACHIN, SOA

# ସର୍ବଧର୍ମର ସମନ୍ୱୟପୀଠ : ଯାଜପୁର

ଯାଜପୁର ଜିଲ୍ଲାର ଇତିହାସ ଅନେକ ପ୍ରାଚୀନ । ଏକଦା ପ୍ରାଚୀନ ଉତ୍କଳର ରାଜଧାନୀ ଥିବା ଏହି ଯାଜପୁର ଜିଲ୍ଲାରେ ବୌଦ୍ଧ, ଜୈନ, ଶୈବ, ଶାକ୍ତ, ଗାଣପତ୍ୟ, ନାଗ, ସୌର ଓ ବୈଷ୍ଣବ ଧର୍ମଭିତ୍ତିକ ଶହଶହ ମୂର୍ତ୍ତିରାଜି, ମନ୍ଦିରମାଳା, ସ୍ତୁପ, ଉପାସନା ଗୃହ, ବୌଦ୍ଧବିହାର ଓ କୀର୍ତ୍ତିରାଜି ରହିଛି । ଏ ଅଞ୍ଚଳର ସର୍ବଧର୍ମ ସମନ୍ୱୟ ପୀଠର ଉପସ୍ଥିତିସ୍ଥଳ କହିଲେ ଅତ୍ୟୁକ୍ତି ହେବନାହିଁ । ଏହି ସମଗ୍ର ଅଞ୍ଚଳରେ କଳା, ସାହିତ୍ୟ, ସଂସ୍କୃତି, ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ସମଗ୍ର ବିଶ୍ୱର ବିରଳ ତଥା ବିସ୍ମୟ ଭାବେ ପ୍ରତିଭାତ ହୋଇଛି ।

**ବୌଦ୍ଧଧର୍ମ :**

ସମଗ୍ର ଯାଜପୁର ଅଞ୍ଚଳ ଅତୀତରେ ବୌଦ୍ଧ ଧର୍ମର ଏକ ଭୂସ୍ୱର୍ଗ ଥିଲା । ଅର୍ଥାତ୍ ବୌଦ୍ଧ ଧର୍ମ ଏକ ସାର୍ବଜନୀନ ଲୌକିକ ଗଣଧର୍ମ ଭାବେ ପ୍ରସିଦ୍ଧ ଲାଭ କରିଥିଲା । ଯାଜପୁର ଜିଲ୍ଲାରୁ ସର୍ବାଧିକ ୧୩୦ ଟି ସ୍ଥାନରୁ ବୌଦ୍ଧ କୀର୍ତ୍ତିମାଳା ଆବିଷ୍କୃତ ହେବା ସମଗ୍ର ଦେଶ ତଥା ବିଶ୍ୱରେ ବିରଳ ।

**ଉଦୟଗିରି :**

ବିରୂପା-ବ୍ରାହ୍ମଣୀ-କେଲୁଅ-ଗେଙ୍ଗୁଟୀ ନଦୀ ଅବବାହିକାରେ ଦଣ୍ଡାୟମାନ, ନବଗଠିତ ଯାଜପୁର ଜିଲ୍ଲା ବାଲିଚନ୍ଦ୍ରପୁର ଥାନା ଅନ୍ତର୍ଗତ ବିଶ୍ୱ ପ୍ରସିଦ୍ଧ ବୌଦ୍ଧପୀଠ ଉଦୟଗିରି ଅନ୍ୟତମ । ୧୯୮୬ ରୁ ୧୯୮୯ ମଧ୍ୟରେ ସମାହିତ କେନ୍ଦ୍ର ପ୍ରତ୍ନତତ୍ତ୍ୱ ସଂସ୍ଥାର ଉତ୍ଖନନରୁ ଧାନକାଣ୍ଡିଠାରୁ ପାଞ୍ଚଧାନୀ ବୁଦ୍ଧଙ୍କୁ ବହନ କରିଥିବା ବିଶାଳକାୟ କେନ୍ଦ୍ରୀୟ ଇଟା ସ୍ତୁପ, ୧୮ ପ୍ରକୋଷ୍ଠ ଭିତ୍ତିକ ଇଟା ନିର୍ମିତ ବୌଦ୍ଧ ବିହାର, ପର୍ଯ୍ୟାପ୍ତ ସଂଖ୍ୟକ ବିଭିନ୍ନ ମୁଦ୍ରାରେ ଆସୀନ ମନୋରମ ବୁଦ୍ଧ, ଅବଲୋକତେଶ୍ୱର, ଲୋକେଶ୍ୱର, ତାରା, ବସୁଧାରା, ହାରିତୀ, ମହାକାଳ, ମଞ୍ଜୁଶ୍ରୀ, ମୈତ୍ରେୟ ମୂର୍ତ୍ତିରାଜି ଲୋକ ଲୋଚନକୁ ଆସିଛି । ବସ୍ତୁତଃ, ଉଦୟଗିରି ହିଁ ବଜ୍ରଯାନର ଆଦିପୀଠ ଭାବେ ସମଗ୍ର ବିଶ୍ୱରେ ଏକ ବିସ୍ମୟ ଭାବେ ତିଷ୍ଠି ରହିପାରିଛି । ଆବିଷ୍କୃତ ମୋହର ଗୁଡ଼ିକର ଉଦୟଗିରି





Digitized by PPRACHIN, SOA

ବିହାର ନାମ "ମାଧବପୁର ମହାବିହାର ଆର୍ଯ୍ୟ ଭିକ୍ଷୁ ସଂଘ" ଅଛି । ଏହା ବ୍ୟତୀତ ୬୬ ଫୁଟ ଲମ୍ବ, ୩୦ ଫୁଟ ଗଭୀର ଓ ୩୧ ପାବଚ୍ଛ ଯୁକ୍ତ ପ୍ରସ୍ତର କଟା ବୌଦ୍ଧ ଯୁଗୀୟ ବାମ୍ପୀ ସମଗ୍ର ଭାରତ ତଥା ବିଶ୍ୱରେ ବିରଳ । ଉକ୍ତ ବାମ୍ପୀ ପାର୍ଶ୍ୱ ଗାତ୍ରରେ ଉତ୍କୀର୍ଣ୍ଣ



ନଗରୀ ବ୍ରାହ୍ମୀ ଲିପି ଆଲୋଚ୍ୟ ବାମ୍ପୀର ଦାନକର୍ତ୍ତା ବୌଦ୍ଧ ବଜ୍ରଯାନର ଉପାସକ "ରାଣଙ୍କ ବଜ୍ରନାଗଙ୍କ ନାମକୁ ପ୍ରକାଶ କରୁଛି । ଏହା ବ୍ୟତୀତ, ଉଦୟ ଗିରି ସନ୍ନିକଟ ଷୋଳପୁଅମା ପାହାଡରୁ ମଧ ବିଧିବଦ୍ଧ ସର୍ବେକ୍ଷେଣ କରାଯାଇ ପାହାଡ ଶୀର୍ଷରୁ ପଶ୍ଚିମ ଭାରତର କାର୍ଲେ, କାହ୍ନେରୀ, ଭଜ, ପିତଳ ଖୋରା, ଅଜନ୍ତା, ଏଲ୍ଲୋରା ଭଳି ଅନୁରୂପ ପ୍ରସ୍ତର କଟା ମନୋରମ ବୁଦ୍ଧ, ବୋଧିସତ୍ତ୍ୱ ଓଡ୍‌ଡୀୟାନ୍ କରୁକୁଲ୍ଲା, ମଞ୍ଜୁଶ୍ରୀ-ବଜ୍ରସତ୍ତ୍ୱ, ବୌଦ୍ଧ ଗୁମ୍ଫା, ସ୍ତୂପ ରାଜିକୁ ଆବିଷ୍କାର କରାଯାଇଛି । ବିଶେଷ ସ୍ମରଣ ଯୋଗ୍ୟ ଯେ ବିରୂପା, ବ୍ରାହ୍ମଣୀ, କେଲୁଅନଦୀର ତ୍ରିବେଣୀ ସଙ୍ଗମାଞ୍ଚଳ ପ୍ରସିଦ୍ଧ ମହାଗିରି ପର୍ବତ ସନ୍ନିକଟ ଉଦୟଗିରିଠାରେ ବଜ୍ରାଚାର୍ଯ୍ୟ ବିରୁହ୍‌ପାଦ ଯୋଗିନୀ ସଂଚର୍ଯ୍ୟାତନ୍ତ୍ରରେ ସିଦ୍ଧି ଲାଭ କରିବା ସହିତ ନଦୀର ନାମ "ବିରୂପା" ସମ୍ଭବତଃ ବୌଦ୍ଧ ସିଦ୍ଧାଚାର୍ଯ୍ୟ 'ବିରୂପାଦ'ଙ୍କ ନାମରୁ ବ୍ୟୁତ୍ପତ୍ତି ହୋଇଥିବା ସୁସ୍ପଷ୍ଟ ତେବେ କଳାଶ୍ରୀ ଗୋପାଳ ପୁରସ୍ତ ଉଦୟଗିରି ସନ୍ନିକଟ ପ୍ରଖ୍ୟାତ ପ୍ରଚ୍ଛନ୍ନ ବୌଦ୍ଧ-ବୈଷ୍ଣବ ସିଦ୍ଧ ସାଧକ **ପର୍ଶୁରାମ ବିହାରୀ** ମଧ ଉଦୟ ଗିରି ସମେତ ମହାଗିରି ମଝିପଡ଼ା ସିଦ୍ଧ ଗୁମ୍ଫା ଅଞ୍ଚଳ ଚୌରାଶୀ ବୌଦ୍ଧ-ସିଦ୍ଧାଚାର୍ଯ୍ୟମାନଙ୍କର ସିଦ୍ଧି ଭୂମି ଥିଲା ବୋଲି ସ୍ୱରଶତ ଆମ୍ର ପରତେ ଗୀତାରେ ପ୍ରତିପାଦତ କରିଛନ୍ତି ।

## ରତ୍ନଗିରି :



ଲଳିତଗିରି, ଉଦୟଗିରି ଭଳି ବିରୂପା-ବ୍ରାହ୍ମଣୀ-କେଲୁଅ ନଦୀ ଉପତ୍ୟକାରେ ଅବସ୍ଥିତ ତଥା ଯାଜପୁର ଜିଲ୍ଲା ଅନ୍ତର୍ଗତ ବିଶ୍ୱ ବିଖ୍ୟାତ ବୌଦ୍ଧ ପୀଠ ରତ୍ନଗିରି, ଏକଦା ସମଗ୍ର ବୌଦ୍ଧ ତନ୍ତ୍ର, ଶ୍ରୀ ବାଳଚକ୍ର ତନ୍ତ୍ର, କାଳଚକ୍ରଯାନ, ତଥା ତାନ୍ତ୍ରିକ ଯୋଗାଚାର ବିଜ୍ଞାନବାଦର ଏକ ଅଭୂତପୂର୍ବ ମହାବିହାର ଓ ବିଶ୍ୱ ବିଦ୍ୟାଳୟ ଭାବେ ତତ୍କାଳୀନ ମଧ୍ୟଯୁଗୀୟ ବିଶ୍ୱରେ ପ୍ରତିଷ୍ଠା ତଥା ପ୍ରସିଦ୍ଧି ଲାଭ କରିଥିଲା । ଲାମା ତାରନାଥଙ୍କ ବର୍ଣ୍ଣନାନୁଯାୟୀ, ଗୁପ୍ତ ସମ୍ରାଟ ବୁଦ୍ଧ ପକ୍ଷ ନରସିଂହ ଗୁପ୍ତ ବାଳାଦିତ୍ୟ ରତ୍ନଗିରିରେ ଏକ ସଂଘାରାମ ସମେତ ଏହାର ଚତୁପାର୍ଶ୍ୱରେ ୫୦୦ ଶ୍ରମଣଙ୍କ ପାଇଁ ଉଦ୍ଦିଷ୍ଟ ୮ ଗୋଟି ବୌଦ୍ଧ ବିହାର ନିର୍ମାଣ କରିଥିଲେ । ୧୯୦୩ରେ ଯାଜପୁରର ତତ୍କାଳୀନ ଏସ-



Digitized by PPRACHIN, SOA

ଡି-ଓ ମନମୋହନ ଚକ୍ରବର୍ତ୍ତୀଙ୍କ ଦ୍ୱାରା ସର୍ବେକ୍ଷିତ ଏବଂ ୧୯୫୮-୬୦ ରେ ଡ଼ଃ ଦେବଳା ମିଶ୍ରଙ୍କ ଦ୍ୱାରା ଉତ୍‌ଖନନ କରାଯାଇ ରତ୍ନଗିରିରୁ ୪୦ ଫୁଟ ଉଚ୍ଚ ଇଟା ନିର୍ମିତ ବିରାଟକାୟ ମହାସ୍ତୂପ, ଏକାଧିକ ମହଲା ବିଶିଷ୍ଟ ୨ଟି ବିହାର, ଗୋଟିଏ ଏକ ପକ୍ଷଯୁକ୍ତ ବିହାର, ୮ଟି ମନ୍ଦିର, ୩୦ ଫୁଟ ଉଚ୍ଚ ପ୍ରସ୍ତର ନିର୍ମିତ ମହାକାଳ ମନ୍ଦିର, ଶତାଧିକ ବିଭିନ୍ନ ମୁଦ୍ରାରେ ଆସୀମ ମନୋରମ ବୁଦ୍ଧ, ବୋଧିସତ୍ତ୍ୱ, ବୌଦ୍ଧ ଦେବୀ ତାରା, ହାରିତୀ,



ବସୁଧାରା, ପ୍ରଜ୍ଞାପାରମିତା, ବୌଦ୍ଧ ତନ୍ତ୍ରଦେବତା ସମ୍ବର, ମହାକାଳ, ଯମାନ୍ତକ, କୃଷ୍ଣଯାମରୀ, ହେରୁକ ମୂର୍ତ୍ତିରାଜି ଲୋକଲୋଚନକୁ ଆସିଛି । ଆବିଷ୍କୃତ ମୋହର ଗୁଡ଼ିକରେ ରତ୍ନଗିରି ବୌଦ୍ଧ ପୀଠର ନାମ ''ଶ୍ରୀ ରତ୍ନଗିରି ମହାବିହାର ଆର୍ଯ୍ୟଭିକ୍ଷୁ ସଂଘସ୍ୟ'' ବୋଲି ଉତ୍କୀର୍ଣ୍ଣ ହୋଇଛି । ରତ୍ନଗିରିଠାରୁ ସୁଦୂର ନେପାଳ, ତୀବ୍ବତ, ଚୀନ୍, ଜାଭା, ବୋର୍ଣ୍ଣିଓ, ବାଲି, ସିଂହଳ, କାମ୍ବୋଡିଆ, ମେକ୍ସିକୋ, ଯାପାନ୍, ବୋଗ୍‌ବୋଦର, ଆଦି ଦେଶମାନଙ୍କୁ ତାନ୍ତ୍ରିକ ବୌଦ୍ଧ ଧର୍ମ ପ୍ରଚାରିତ ଓ ପ୍ରସାରିତ ହୋଇଥିଲା । ଉଲ୍ଲେଖ ଯୋଗ୍ୟ ଯେ; ପ୍ରଜ୍ଞାନାମକ ଜନୈକ ବୌଦ୍ଧ ଶିକ୍ଷାନ୍ୱେଷୀ ନାଳନ୍ଦା ବିଶ୍ୱବିଦ୍ୟାଳୟରେ ଦୀର୍ଘ ୧୮ ବର୍ଷ କାଳ ବୌଦ୍ଧ ଧର୍ମ ଶାସ୍ତ୍ର ଅଧ୍ୟୟନ ପରେ ଗୁହ୍ୟାଚାର ବାଦ ଓ ତାନ୍ତ୍ରିକ ଯୋଗାଚାର ବିଜ୍ଞାନବାଦ ବା ଯୋଗତନ୍ତ୍ରରେ ତାତ୍ତ୍ୱିକ ଗବେଷଣାର୍ଥେ ତତ୍କାଳୀନ ଉ.ଚା.ବା ଓଡ୍ର ଦେଶ (ଓଡ଼ିଶା)ର ପ୍ରସିଦ୍ଧ ବୌଦ୍ଧତନ୍ତ୍ର ଯୋଗପୀଠ ରତ୍ନଗିରିଠାରେ ସିଦ୍ଧିପ୍ରାପ୍ତ ପୂର୍ବକ ଭୌମଙ୍କର ସମ୍ରାଟ ପରମ ସୌଗତ ଶୁଭାକର ଦେବ-ସିଂହଙ୍କ ରାଜଦୂତ ଭାବେ ମହାଯାନ ବୌଦ୍ଧ ଅବତଂଶକ ସୂତ୍ରର ଅନ୍ତିମ



ଅଧ୍ୟାୟ ଗୁଣ୍ଡବ୍ୟୁହ ଗ୍ରନ୍ଥ, ଏକ ଚାହୁଆ, ରାଜାଙ୍କ ସ୍ୱହସ୍ତଲିଖିତ ପତ୍ରକୁ ବହନ ପୂର୍ବକ ରାଜଦୂତ ଭାବେ ଚୀନ୍ ସମ୍ରାଟ ଟି.ସଂ.ଙ୍କ ରାଜଦରବାରକୁ ପ୍ରେରିତ ହୋଇଥିଲେ । ସେଠାରେ ପ୍ରଜ୍ଞା ଗଣ୍ଡବ୍ୟୁହ ଗ୍ରନ୍ଥକୁ ଚୀନ୍ ଭାଷାରେ ଅନୁବାଦ କରିଥିଲେ ।



Digitized by PPRACHIN, SOA

## କୋଲଣଗିରି :

ଯାଜପୁର ଜିଲ୍ଲା କେଲୁଅ ନଦୀ ପାର୍ଶ୍ୱରେ ରତ୍ନଗିରି, ଲଳିତଗିରି, ଉଦୟଗିରି ଭଳି ଅନ୍ୟତମ ବୌଦ୍ଧପୀଠ କୋଲଣଗିରି ଅବସ୍ଥିତ । ଏକ ବ୍ୟାପକ କ୍ଷେତ୍ର ସର୍ବେକ୍ଷଣରୁ ଏହିଠାରୁ ଏକ ବିରାଟ ଇଟାସ୍ତୂପ, ବୌଦ୍ଧବିହାର, ବୁଦ୍ଧ, ମୈତ୍ରେୟ, ଅବଲୋକେଶ୍ୱର, ମହାକାଳ, ତାରା ମୂର୍ତ୍ତିରାଜିର ଭଗ୍ନାବଶେଷ ମିଳିଅଛି । ନବାବିଷ୍କୃତ ବୌଦ୍ଧପୀଠଟି ଭୌମଙ୍କର ଯୁଗୀୟ କୀର୍ତ୍ତି ସ୍ତମ୍ଭକୁ ବହନ କରି ଅଦ୍ୟାବଧି ବିଦ୍ୟମାନ ।

## ଘୋଡ଼କା ପାଟ :

ରତ୍ନଗିରି ଓ କୋଲଣ ଗିରିଠାରୁ ୫ କିଲୋମିଟର ଦୂର ସୁଦୂର ପ୍ରସାରୀ ଘୋଡକା ପାଟ ବା ଅଶ୍ୱକ୍ଷୁରାକୃତି ହ୍ରଦର ପାର୍ଶ୍ୱବର୍ତ୍ତୀ ନଦୀପଠାରେ ଏକ ବିଶାଳ ଚତୁର୍ଭୁଜାକାର ଇଟା କୁଦ ତଳେ ଏକ ବୌଦ୍ଧ ବିହାର ଭଗ୍ନାବଶେଷକୁ ସର୍ବପ୍ରଥମେ ଆବିଷ୍କାର କରି ଲୋକଲୋଚନକୁ ଅଣାଯାଇଛି । ଏହିଠାରୁ ମଧ୍ୟ ୫ ଫୁଟ ଉଚ୍ଚ ତଥା ଭୂମି ସ୍ପର୍ଶ ମୁଦ୍ରାରେ ଆସୀନ ବିରାଟକାୟ ମସ୍ତକ ବିହୀନ ବୁଦ୍ଧ ମୂର୍ତ୍ତିକୁ ମାଟିତଳୁ ଖୋଳି ଉଦ୍ଧାର କରାଯାଇ ପାରିଛି ।



ଘୋଡ଼କା ପାଟରୁ ଆବିଷ୍କୃତ ମସ୍ତକ ବିହୀନ ଭୂମିସ୍ପର୍ଶ ମୁଦ୍ରାରେ ବୁଦ୍ଧ ମୂର୍ତ୍ତି ।

## ମହାକାଳ ପଡ଼ା :

ଯାଜପୁର ଜିଲ୍ଲା କେଲୁଅ ନଦୀ ତଟବର୍ତ୍ତୀ ଦିଗନ୍ତବିସ୍ତାରୀ ପାଟ ମଧ୍ୟରୁ ରତ୍ନଗିରିଠାରୁ ୫ କିଲୋମିଟର ଦୂର ବରୀ ବ୍ଲକ ଅନ୍ତର୍ଗତ ମହାକାଳ ପଡ଼ା ଗ୍ରାମ ଉପକଣ୍ଠରୁ ଏକ ବିଶାଳ ଇଟା ନିର୍ମିତ ବୌଦ୍ଧ ବିହାରର ପ୍ରକୋଷ୍ଠ ରାଜି, ମଞ୍ଜୁଶ୍ରୀ, ତାରା, ବୁଦ୍ଧ ମୂର୍ତ୍ତି ସମେତ ନାରାୟଣ ବିଷ୍ଣୁ ଓ ଅର୍ଦ୍ଧଶତ ମୁଗୁନୀ ଶିବଲିଙ୍ଗଗୁଡ଼ିକୁ ଆବିଷ୍କାର କରାଯାଇଛି । ସାର୍ବଜନୀନ ବୌଦ୍ଧ ପୀଠ ଓ ବିହାର ପ୍ରକୋଷ୍ଠ ମଧ୍ୟରେ ଶିବଲିଙ୍ଗମାନଙ୍କର ସମାବେଶ, ମୋ ମତରେ ତତ୍କାଳୀନ ବୌଦ୍ଧଧର୍ମ, ସଂଘ, ବିହାର ଓ ଶ୍ରମଣମାନଙ୍କ ଉପରେ ବ୍ରାହ୍ମଣ୍ୟ ତାନ୍ତ୍ରିକ ଶୈବ, ଶାକ୍ତ, ବୈଷ୍ଣବ ପାଷାଣ୍ଡିକମାନଙ୍କର ବର୍ବରୋଚିତ ତଥା ବିଭତ୍ସ ଦମନଲୀଳାର ଏକ ନଗ୍ନ ନମୁନା କହିଲେ ଅତ୍ୟୁକ୍ତି ହେବନାହିଁ । ଅଧିକନ୍ତୁ; ନବାବିଷ୍କୃତ କୋଲଣଗିରି, ଘୋଡକା ପାଟ ଓ ମହାକାଳପଡ଼ା ବୌଦ୍ଧ ପୀଠ ପୁଞ୍ଜି ଖୁବ୍ ସମ୍ଭବତଃ, ଲାମା ତାରନାଥଙ୍କ ବର୍ଣ୍ଣିତ ବୁଦ୍ଧ ପକ୍ଷ ନରସିଂହ ଗୁପ୍ତ ବାଳାଦିତ୍ୟଙ୍କ ଦ୍ୱାରା ରତ୍ନଗିରି ସମେତ ଏହାର ଚତୁ ପାର୍ଶ୍ୱରେ ମଧୁଚକ୍ର ଭଳି ନିର୍ମାଣ କରାଯାଇଥିବା ୫୦୦ ଶ୍ରମଣମାନଙ୍କ ପାଇଁ ଉଦ୍ଦିଷ୍ଟ ୮ ଗୋଟିଏ ବୌଦ୍ଧ ବିହାରର ଭଗ୍ନାବିଶେଷର ନିଚ୍ଛକ ସତ୍ୟତାକୁ ବହନ କରେ । ଅଧିକନ୍ତୁ ବୌଦ୍ଧ ତନ୍ତ୍ରଦେବତା ମହାକାଳଙ୍କ ନାମରୁ ମହାକାଳପଡ଼ା ଗ୍ରାମର ଉତ୍ପତ୍ତି ହୋଇଥିବା ସୁସ୍ପଷ୍ଟ ।

**ଏରଡା :**

ଯାଜପୁର ଜିଲ୍ଲା ଖରସ୍ରୋତା ନଦୀ ପଠାରେ ଅବସ୍ଥିତ ଏରଡା ଗ୍ରାମ ଉପକଣ୍ଠ ମହାକାଳମନ୍ଦିର, ପାର୍ଶ୍ୱଅଞ୍ଚଳ, ନଦୀପଠାରୁ ଏକାଧିକ ବୌଦ୍ଧବିହାର, ସ୍ତୂପ, ଅର୍ଘ୍ୟ ସ୍ତୂପରାଜି, ବିଶାଳ ମନୋରମ ବୁଦ୍ଧ ମସ୍ତକ, ଜମ୍ଭଳ, ପଦ୍ମପାଣି, ମୂର୍ତ୍ତି ରାଜିର ଜୀର୍ଣ୍ଣାବଶେଷ ଉଦ୍ଧାର କରାଯାଇଛି ।

**କପିଳା :**

ଯାଜପୁର ଜିଲ୍ଲା ବିନ୍ଝାରପୁର ଥାନା ପରିସର ମଧ୍ୟରେ ନବାବିଷ୍କୃତ ବୌଦ୍ଧପୀଠ କପିଳା ଦଣ୍ଡାୟମାନ । ସର୍ବେକ୍ଷଣରୁ ରତ୍ନଗିରି, ଲଳିତ ଗିରି, ଉଦୟ ଗିରି ଭଳି ବିରାଟ ଇଟାନିର୍ମିତ ବିହାର, ୫ ଫୁଟ ଉଚ୍ଚ ଦ୍ୱିଭୁଜ ପଦ୍ମପାଣି ଅବଲୋକତେଶ୍ୱର, ୪ ଫୁଟ ଉଚ୍ଚ ଚତୁର୍ଭୁଜ ଜଟା ମୁକୁଟ ଲୋକେଶ୍ୱର, ଦ୍ୱିଭୁଜ ପଦ୍ମପାଣି ବୋଧିସତ୍ତ୍ୱ ମୂର୍ତ୍ତି ସମେତ ପର୍ଯ୍ୟାପ୍ତ ଅର୍ଘ୍ୟ ସ୍ତୂପରାଜି, ଅମଳକ ଶିଳା ଖଣ୍ଡ, ବୌଦ୍ଧ ବିହାର ଦ୍ୱାରା ବନ୍ଧର ଭଗ୍ନାବଶେଷ ଲୋକ ଲୋଚନକୁ ଆସିଛି ।

**ଧର୍ମଶାଳା :**

ଯାଜପୁର ଜିଲ୍ଲା ଅନ୍ତର୍ଗତ ବ୍ରାହ୍ମଣୀ-ଗେଙ୍ଗୁଟୀ କେଲୁଅ ନଦୀ ଉପତ୍ୟକାରେ ଅବସ୍ଥିତ ବୌଦ୍ଧ କୀର୍ତ୍ତି ବିମଣ୍ଡିତ ଧର୍ମଶାଳା ପାଲୀ ବୌଦ୍ଧ ଗ୍ରନ୍ଥରେ ବର୍ଣ୍ଣିତ ''ଧମ୍ମ'' (ବା ଧର୍ମ, ବା ବୌଦ୍ଧ ଧର୍ମ) ସ୍ମୃତିକୁ ସାକାର କରି ବୌଦ୍ଧ ଧର୍ମର ଏକ ଭୂସ୍ୱର୍ଗ ଭାବେ ଅଦ୍ୟାବଧି ବିଦ୍ୟମାନ । ଧର୍ମଶାଳାର ପ୍ରାଚୀନତ୍ୱ ଖ୍ରୀଷ୍ଟପୂର୍ବ ୬ ଷ୍ଠ ଶତାବ୍ଦୀ ବା ବୁଦ୍ଧଙ୍କ ସମସାମୟିକ କହିଲେ ଅତ୍ୟୁକ୍ତି ହେବ ନାହିଁ ।

**ଲାଙ୍ଗୁଡି ପାହାଡ଼ :**

ଯାଜପୁର ଜିଲ୍ଲା ଧର୍ମଶାଳା ଥାନା ମିର୍ଜାପୁର ଗ୍ରାମ ପଞ୍ଚାୟତ ଅଧୀନ ସାଲେପୁର ଗ୍ରାମ ଉପକଣ୍ଠ ତଥା କେଲୁଅ ନଦୀ ନିକଟରେ ବୌଦ୍ଧ କୀର୍ତ୍ତି ବିମଣ୍ଡିତ ଲାଙ୍ଗୁଡି ପାହାଡ ଦଣ୍ଡାୟମାନ । ୧୯୯୨ ଏପ୍ରିଲ୍ ୧୩ ତାରିଖରେ ମୁଁ ସର୍ବପ୍ରଥମେ ଲାଙ୍ଗୁଡି ପାହାଡରେ


ଆବିଷ୍କୃତ ବୌଦ୍ଧପୀଠ



ପ୍ରସ୍ତରକଟା ବିରଳ ମନୋରମ ବୁଦ୍ଧ, ତାରା, ପ୍ରଜ୍ଞା, ପାରମିତା, ଚୁନ୍ଦା, ଅବଲୋକିତେଶ୍ୱର, ୩୬ ଟି ପ୍ରସ୍ତର କଟା ସ୍ତୂପରାଜି, ଏକ ବିରାଟ କେନ୍ଦ୍ରିୟ ଇଟା ସ୍ତୂପ ଓ ଦୁଇଟି ବୌଦ୍ଧ ବିହାରର



Digitized by PPRACHIN, SOA

ଭଗ୍ନାବିଶେଷଗୁଡ଼ିକୁ ଲୋକ ଲୋଚନକୁ ଆଣିପାରିଛି । ଏକ ଭଗ୍ନଶିଳା ଲେଖ ରେ "ପୁଷ୍ପ-ସ-ଭାର-ଗରୟଃ" ଉତ୍କୀର୍ଣ୍ଣ ହୋଇଥିବା କଥା ପ୍ରଫେସର ବି.ଏନ୍.ମୁଖାର୍ଜୀ ପାଠୋଦ୍ଧାର କରି କହିଛନ୍ତି । ତେବେ ମୋ ଦ୍ୱାରା ସର୍ବପ୍ରଥମେ ଆବିଷ୍କୃତ ଲାଙ୍ଗୁଡିର ପ୍ରସ୍ତର କଟା ବୌଦ୍ଧ କୀର୍ତ୍ତିମାଳା ସମଗ୍ର ପୂର୍ବ ଉତ୍ତର ଭାରତ ତଥା ବିଶ୍ୱରେ ବିରଳ ଓ ବିସ୍ମୟ । ଏହି ବୌଦ୍ଧପୀଠଟି ଗୁପ୍ତ ପର ଯୁଗ ଭୌମଙ୍କର ଯୁଗରେ ଗଢ଼ି ଉଠିଥିବା ଜଣାଯାଏ ।

## ବଜ୍ରଗିରି :

ଲାଙ୍ଗୁଡି ପାହାଡର ପୂର୍ବଦିଗକୁ ମାତ୍ର ୪ କିଲୋମିଟର ଦୂରରେ ଦଣ୍ଡାୟମାନ ବୌଦ୍ଧକୀର୍ତ୍ତି ବିମଣ୍ଡିତ ବଜ୍ରଗିରି । ଏକ କ୍ଷେତ୍ର ସର୍ବେକ୍ଷଣରୁ ବଜ୍ର ଗିରିଠାରୁ ଏକାଧିକ ଇଟା ବୌଦ୍ଧ ବିହାର, ସ୍ତୁପ, ଦ୍ୱାରବନ୍ଧ, ଅର୍ଘ୍ୟସ୍ତୂ, ବଜ୍ରପାଣି, ଅବଲୋକତେଶ୍ୱର, ମଞ୍ଜୁଶ୍ରୀ, ମହାକାଳ ମୂର୍ତ୍ତିଗୁଡ଼ିକର ଜୀର୍ଣ୍ଣାବଶେଷ ଲୋକ ଲୋଚନକୁ ଆସିଛି । ପ୍ରସିଦ୍ଧ ବୌଦ୍ଧ ଗ୍ରନ୍ଥ ନିକାୟ ସଂଗ୍ରହରେ ବର୍ଣ୍ଣିତ "ଶ୍ରୀ ଉଡଡୀୟାନସ୍ଥ ବଜ୍ର ପର୍ବତ" ମୋ ମତରେ ଯାଜପୁର ଜିଲ୍ଲା ଧର୍ମଶାଳା ଥାନା ଅନ୍ତର୍ଗତ ପ୍ରସିଦ୍ଧ ବୌଦ୍ଧ ପୀଠ ବଜ୍ରଗିରି, ହୋଇଥିବା ସମ୍ଭାବ୍ୟ ସତ୍ୟତାକୁ ଏଡାଇ ଦିଆଯାଇ ନ ପାରେ । "ବଜ୍ରଗିରି" ଯଥାର୍ଥରେ ବୌଦ୍ଧ ବଜ୍ରଯାନ ସ୍ମୃତିକୁ ସାକାର କରି ବିଦ୍ୟମାନ ।

## କାଏମା ପାହାଡ :



ଧର୍ମଶାଳା ଥାନା ଉପକଣ୍ଠ କେଲୁଅ ନଦୀ ପାର୍ଶ୍ୱରେ ଦଣ୍ଡାୟମାନ ବୌଦ୍ଧ କୀର୍ତ୍ତି ବିମଣ୍ଡିତ କାଏମା ପାହାଡ । ସର୍ବେକ୍ଷଣରୁ ବୌଦ୍ଧହୀନଯାନରେ ପ୍ରଚଳିତ ଧଉଳୀ ଭଳି ଗୌତମ ବୁଦ୍ଧଙ୍କ ସାଙ୍କେତିକ ଅବସ୍ଥିତି ସ୍ୱରୂପ ୩ ଫୁଟ ୫ ଇଞ୍ଚ ଉଚ୍ଚ ଏକ ପ୍ରସ୍ତର କଟା ହସ୍ତୀ ପ୍ରତିମା, ଶିଳାଲେଖ, ୧୫ ଗୋଟି ବୌଦ୍ଧହୀନଯାନ ଗୁମ୍ଫାପୁଞ୍ଜ, ବୌଦ୍ଧବିହାର, ଓ ସୁଙ୍ଗଯୁଗୀୟ ପ୍ରାଚୀନ ବୌଦ୍ଧ ସ୍ତୂପର ବେଦିକାଗୁଡ଼ିକୁ ଆବିଷ୍କାର କରି ଲୋକ ଲୋଚନକୁ ଆଣିପାରିଛି ।

## ରାଧାନଗର :

କାଏମା ପାହାଡ ପାଦଦେଶରେ ୬ କିଲୋମିଟର ପରିମିତ ୩୦ ଫୁଟ ଓସାର ଓ ୮ ଫୁଟ ଉଚ୍ଚତା ବିଶିଷ୍ଟ ଇଟା ପ୍ରାଚୀର ଦ୍ୱାରା ସନ୍ନିବିଷ୍ଟ ଶିଶୁପାଳଗଡ, ଜଉଗଡ଼, ଅସୁରଗଡ ଭଳି ଏକ ପ୍ରାଚୀନ ଦୁର୍ଗ ସମେତ ଶତାଧିକ କୂପ ଭାଜି, ବୌଦ୍ଧ ସ୍ତୂପ, ବିହାର, ସ୍ତମ୍ଭ, ମୂର୍ତ୍ତିରାଜି, ନନ୍ଦ, ମୌର୍ଯ୍ୟ, କୁଷାଣ, ଗୁପ୍ତ, ମୋଗଲ, ମରହଟ୍ଟା, ଆଫଗାନ ଯୁଗୀୟ ମୁଦ୍ରାଗୁଡ଼ିକୁ ବହନ କରିଥିବା ରାଧାନଗର ଅଞ୍ଚଳ; ଏକଦା ପ୍ରାଚୀନ କଳିଙ୍ଗର ରାଜଧାନୀ ଦନ୍ତପୁର ଓ ପରବର୍ତ୍ତୀ ପର୍ଯ୍ୟାୟ ଶତାବ୍ଦୀରେ ଭୌମକର ସମ୍ରାଟମାନଙ୍କ ରାଜଧାନୀ ପ୍ରସିଦ୍ଧ 'ଗୁହେଶ୍ୱର ପାଟକ' ବା 'ଗୁହଦେବ ପାଟକ' ବା 'ଗୁହଶିବ ପାଟକ' ଭଗ୍ନାବିଶେଷକୁ ବହନ କରି ବିଦ୍ୟମାନ । ଏଠାରେ ସୂଚନା ଯୋଗ୍ୟ



Digitized by PPRACHIN, SOA




ଯେ, ଭୌମଙ୍କର ସମ୍ରାଟ ଗଣ ନିଜର ପୂର୍ବସୂରୀ ବୌଦ୍ଧ ଧର୍ମାବଲମ୍ବୀ ଗୁହଶିବଙ୍କ ବଂଶଧର ଭାବେ ନିଜର ରାଜଧାନୀକୁ ବିରଜା-ଯାଜପୁର ଅନତି ଦୂର ଅର୍ଥାତ୍ 'ରାଧାନଗର' ଠାରେ ନିର୍ମାଣ କରି ଗୁହଶିବଙ୍କ ନାମରେ ପ୍ରସିଦ୍ଧ 'ଗୁହଶିବ ପାଟକ ନାମରେ ନାମିତ କରିଥିବା ବେଳେ, ରାଧାନଗର ସନ୍ନିକଟ ନେଉଳପୁର ଗ୍ରାମ ଉପକଣ୍ଠରୁ ପ୍ରାପ୍ତ ଭୌମଙ୍କର ସମ୍ରାଟ ଶୁଭକର ଦେବଙ୍କ ଦ୍ୱାରା ସ୍ୱରାଜଧାନୀ ଗୁହେଶ୍ୱର ପାଟକ ଉପକଣ୍ଠରେ ପ୍ରଦତ୍ତ ଏକ 'ତାମ୍ରଶାସନ' ଆବିଷ୍କୃତ ହେବା ଫଳରେ ଧର୍ମଶାଳାସ୍ଥ ରାଧାନଗର ଏକଦା ପ୍ରାଚୀନ କଳିଙ୍ଗର ରାଜଧାନୀ 'ଦନ୍ତପୁର' ଓ ଭୌମଙ୍କର ଯୁଗୀୟ ଓଡ୍ରଦେଶ ବା ଓଡ଼ିଶାର ପ୍ରସିଦ୍ଧ ରାଜଧାନୀ ''ଗୁହେଶ୍ୱର ପାଟକ'' ହୋଇଥିବା ନିଶ୍ଚିତ ବୋଲି ଆବିଷ୍କୃତ ପ୍ରତ୍ନତାତ୍ତ୍ୱିକ ଉପାଦାନ ଗୁଡ଼ିକରୁ ସୁସ୍ପଷ୍ଟ ।

**କଣ୍ଟିଗଡ଼ିଆ :**

ଧର୍ମଶାଳା ରାଧାନଗର ନେଉଳପୁର ପାହାଡକୁ ଲାଗି ରହିଛି ବୌଦ୍ଧକୀର୍ତ୍ତି ବିମଣ୍ଡିତ କଣ୍ଟିଗଡିଆ ପାହାଡ । ଏହି ପାହାଡରୁ ସ୍ତୂପ, ପ୍ରସ୍ତର କଟା କୂପ ରାଜି, ବୁଦ୍ଧ, ବୁଦ୍ଧମସ୍ତକ, ପଦ୍ମପାଣି ମୂର୍ତ୍ତିରାଜି, ୪ଟି ବୌଦ୍ଧ ଗୁମ୍ଫା ସମେତ ସୁଙ୍ଗଯୁଗୀୟ ପ୍ରସ୍ତର କଟା ଯକ୍ଷ ମୂର୍ତ୍ତି ରାଜିକୁ ଆବିଷ୍କାର କରାଯାଇଛି ।

**ନେଉଳପୁର ପାହାଡ :**

ଧର୍ମଶାଳା ସନ୍ନିକଟ ନେଉଳପୁର ଗ୍ରାମ ଉପକଣ୍ଠରୁ ପଣ୍ଡିତ ବିନାୟକ ମିଶ୍ର ଭୌମଙ୍କର ସମ୍ରାଟ ଶୁଭଙ୍କର ଦେବଙ୍କ ତାମ୍ର ଫଳକ ଆବିଷ୍କାର କରିଥିବା ବେଳେ, ସେଇ ପାହାଡର ଶୀର୍ଷରୁ ୮ ଗୋଟି ବୌଦ୍ଧ ଗୁମ୍ଫା ଲୋକଲୋଚନକୁ ଆସିପାରିଛି । ବିଧିବଦ୍ଧ ବୌଦ୍ଧ ବିହାର ପୂର୍ବରୁ ବୌଦ୍ଧ ଶ୍ରମଣମାନଙ୍କର ବର୍ଷାବାସ ପାଇଁ ସାମୟିକ ଭାବେ ଏହି ଗୁମ୍ଫାଗୁଡ଼ିକ ଉଦ୍ଦିଷ୍ଟ ଥିଲା ।

**ଗୋକେର୍ଣ୍ଣଶ୍ୱର ପାହାଡ :**

ଧର୍ମଶାଳା ଉପକଣ୍ଠ ବ୍ରାହ୍ମଣୀ ନଦୀ ତଟରେ ଦଣ୍ଡାୟମାନ ଦେଉଳୀ ଓ ଗୋକର୍ଣ୍ଣେଶ୍ୱର ପାହାଡଦ୍ୱୟର ସମାହାର । ସର୍ବେକ୍ଷଣରୁ ଦେଉଳୀ ପାହାଡ ଶୀର୍ଷରୁ ଏକାଧିକ ବୌଦ୍ଧ ଗୁମ୍ଫା, ଗୋକର୍ଣ୍ଣେଶ୍ୱର ପାହାଡରୁ ୨ ଟି ବୌଦ୍ଧ ଗୁମ୍ଫା ସମେତ ପର୍ଯ୍ୟାପ୍ତ ବୌଦ୍ଧ ବିହାର, ସ୍ତୂପ, ବୁଦ୍ଧ, ବୋଧିସତ୍ତ୍ୱ, ଧ୍ୟାନୀବୁଦ୍ଧ, ତାରା, ପର୍ଣ୍ଣ ଶବରୀ ମୂର୍ତ୍ତିରାଜିର ସମାହାର ଫଳରେ, ଗୋକର୍ଣ୍ଣେଶ୍ୱର ଓ ଦେଉଳୀ ପାହାଡଦ୍ୱୟ ତାନ୍ତ୍ରିକ ବୌଦ୍ଧ ଧର୍ମର ଏକ ଅଭୟାରଣ୍ୟ ଥିଲା । ପରବର୍ତ୍ତୀ ପର୍ଯ୍ୟାୟ ଶତାବ୍ଦୀରେ ଅର୍ଥାତ୍ ସୋମବଂଶୀ ଓ ଗଙ୍ଗ ଯୁଗରେ ବ୍ରାହ୍ମଣ୍ୟ ଶୈବ ଧର୍ମାବଲମ୍ବୀ ସମ୍ରାଟଙ୍କ ଦ୍ୱାରା ଗୋକର୍ଣ୍ଣେଶ୍ୱର ନାମ ଧାରୀ ଶିବ ପୀଠ ଭାବରେ ଗଢ଼ି ଉଠିଥିଲା । ଯେଉଁଠାରେ ତ୍ରିଲୋଚନ ଶିବ କର୍ତ୍ତୃକ କପିଳା



Digitized by PPRACHIN, SOA

ଧେନୁ ହତ୍ୟା ପାପରୁ ମୋକ୍ଷ ଲାଭ କରିଥିଲେ । ନବତାଳ ଗଭୀରଯୁକ୍ତ ପୂଣ୍ୟତୋୟା ଗୋକର୍ଣ୍ଣିକା ତୀର୍ଥ ଘାଟରେ ତ୍ରିଲୋଚନ ଅବଗାହନ କରିବା ଫଳରେ ତାଙ୍କ ସ୍କନ୍ଧରୁ କପିଳା ଗାଈର ମସ୍ତକ ଛିଡି ପଡିବାରୁ ଏବଂ ବ୍ରହ୍ମହତ୍ୟା ପାପରୁ ମୁକ୍ତି ଲାଭ କରିଥିବାରୁ ଏହି ପୀଠର ନାମ ପ୍ରସିଦ୍ଧ ଗୋକର୍ଣ୍ଣିକା କ୍ଷେତ୍ର ବା ଗୋକହ୍ନିକା ତୀର୍ଥଘାଟ ବୋଲି ମହାଭାରତ, ତଥା ଅଚ୍ୟୁତାନନ୍ଦ ଦାସଙ୍କ ବ୍ରହ୍ମ କଳ୍ପରେ ବର୍ଣ୍ଣନା କରାଯାଇଛି ।

## ନଠୁଆବର :

ଧର୍ମଶାଳା ଥାନା ଅନ୍ତର୍ଗତ ନଠୁଆବର ଠାରୁ ସର୍ବେକ୍ଷଣ ସମୟରୁ ଏକାଧାରରେ ୪୦ ଫୁଟ ଉଚ୍ଚ ବିଶାଳ ଶିବ ମନ୍ଦିର ପରିସରରେ ଏକାଧିକ ମୁଗୁନୀ ଶିବଲିଙ୍ଗ ସମେତ ଧ୍ୟାନୀବୁଦ୍ଧ, ଜମ୍ଭଳ, ମହିଷ ମର୍ଦ୍ଦିନୀ ଦୁର୍ଗା, ଚାମୁଣ୍ଡା, ଉମାମହେଶ୍ୱର ମୂର୍ତ୍ତି ମିଳିଛି । ଏସ୍.ଡି.ଓ କମ୍ପାଉଣ୍ଡ ଯାଜପୁର :- ଏହିଠାରୁ ୧୬ ଫୁଟ ଲମ୍ବ ବିରାଟକାୟ ପଦ୍ମପାଣି ବୋଧିସତ୍ତ୍ୱ, ଧ୍ୟାନ ଓ ଭୂମି ସ୍ପର୍ଶ ମୁଦ୍ରାରେ ଆସୀନ ବୁଦ୍ଧ ମୂର୍ତ୍ତି, ସମେତ ଚାମୁଣ୍ଡା ମାତ୍ରିକା, ବରାହୀ, ଇନ୍ଦ୍ରାଣୀ ଆଦି ସପ୍ତ ମାତୃକାଗଣଙ୍କୁ ସର୍ବେକ୍ଷିତ କରାଯାଇଛି । ଏଗୁଡ଼ିକ କେନ୍ଦ୍ର ପ୍ରତ୍ନତତ୍ତ୍ୱ ସଂସ୍ଥାର ଅଧିନରେ ସଂରକ୍ଷିତ କରାଯାଇଛି ।

## ଶ୍ରୀରାମପୁର :

ବିରଜା ମନ୍ଦିର ସନ୍ନିକଟ ଶ୍ରୀରାମପୁର ଗ୍ରାମ ବାଉଁଶ ବଣରୁ ଧର୍ମଚକ୍ର ପ୍ରବର୍ତ୍ତନ ମୁଦ୍ରାରେ ଆସୀନ ବୁଦ୍ଧଙ୍କର ଆବକ୍ଷ ଅବୟବ, ଭୂମିସ୍ପର୍ଶ ମୁଦ୍ରାରେ ଆସୀନ ବୁଦ୍ଧ ମୂର୍ତ୍ତି (୩ ଫୁଟ ୫ ଇଞ୍ଚ ଉଚ୍ଚ) ମିଳିଛି ।

## ଶୀତଳେଶ୍ୱର :

ଯାଜପୁର ମ୍ୟୁନିସ୍‌ପାଲିଟି ଅନ୍ତର୍ଗତ ଶୀତଳେଶ୍ୱରଠାରୁ ଏକ ପ୍ରସ୍ତରରେ ୬ ଗୋଟି ଧ୍ୟାନୀ ବୁଦ୍ଧ ମୂର୍ତ୍ତି ସାଙ୍ଗକୁ ବୌଦ୍ଧ ଧାରଣୀ'' ଯେ ଧର୍ମ ହେତୁ ପ୍ରଭବା ହେତୁମ୍ ତେଷାମ୍ ତଥାଗତୋହି ଅବଦତ୍ । ତେଷାଂ ଚ ଯୋ ନିରୋଧ ଏବଂ ବାଦୀ ମହାଶ୍ରମଣଃ, ଉତ୍କୀର୍ଣ୍ଣ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ ।

## ଗଣପତିପୁର :

ଏହି ଗ୍ରାମରୁ ୫ ଫୁଟ ୨ ଇଞ୍ଚ ଉଚ୍ଚ ଭୂମି ସ୍ପର୍ଶ ମୁଦ୍ରାରେ ଆସୀନ ବୁଦ୍ଧ ମୂର୍ତ୍ତି ଆବିଷ୍କାର କରାଯାଇଛି । କୁଆଁସ : ଯାଜପୁର ଜିଲ୍ଲା ମଙ୍ଗଳପୁର ଥାନାର କୁଆଁସ ଗ୍ରାମ ମଙ୍ଗଳା ଠାକୁରାଣୀ ପରିସର ମଧ୍ୟରୁ ବୌଦ୍ଧ ବିହାର ସମେତ, ଜମ୍ଭଳମୂର୍ତ୍ତି, ଜୈନ ତୀର୍ଥଙ୍କର ଓ ମହିଷାମର୍ଦ୍ଦିନୀ ମୂର୍ତ୍ତି, ନିକଟସ୍ଥ ଯୋଗୀମୁଣ୍ଡଠାରୁ ଏକ ବିହାର ଓ ଲୋକେଶ୍ୱର ମୂର୍ତ୍ତି ଆବିଷ୍କୃତ ହୋଇଛି ।

## ତରାଙ୍ଗ ସାଗରପୁର :

ଯାଜପୁର ଜିଲ୍ଲା ମଙ୍ଗଳପୁର ଥାନା ପରିସର ମଧ୍ୟରେ ଅବସ୍ଥିତ ତରାଙ୍ଗ ସାଗରପୁର ଗ୍ରାମ ଉପକଣ୍ଠ ଓ ଗ୍ରାମ ଦେବତୀ ମନ୍ଦିର ପାର୍ଶ୍ୱାଞ୍ଚଳରୁ ଏକାଧିକ ବୌଦ୍ଧ ବିହାର, ମନୋରମ ବୁଦ୍ଧ, ବୋଧିସତ୍ତ୍ୱ, ଦ୍ୱାରବନ୍ଧର ଭଗ୍ନ ବଶେଷ ମିଳିଥିବା ବେଳେ,



Digitized by PPRACHIN, SOA

ଏହିଠାରୁ ପର୍ଯ୍ୟାପ୍ତ ଜୈନ ତୀର୍ଥଙ୍କର, ଋଷଭ ନାଥ, ସମେତ ପର୍ଯ୍ୟାପ୍ତ ମୃଣ୍ମୟ ପାତ୍ରରାଜି, ପିତଳ ଅବଲୋକତେଶ୍ୱର, ନାଗ, ଚାମଣ୍ଡା,ମହିଷାମର୍ଦ୍ଦିନୀ ମୂର୍ତ୍ତିରାଜିର ସମାବେଶ ହିଁ ପୀଠଟିକୁ ଏକ ସର୍ବଧର୍ମ ସମନ୍ୱୟ କ୍ଷେତ୍ର ଭାବେ ପ୍ରତିପାଦିତ କରିପାରିଛି ।

**ସନ୍ଥମାଧବ :**

ଯାଜପୁର ଜିଲ୍ଲା ବିରଜା ମନ୍ଦିର ଅନତି ଦୂରରେ ସ୍ଥିତ ମାଧବପୁର, ନରହରିପୁର, ବରହ୍ମପୁର, ସପନିପୁର, ଓ ସନ୍ଥମାଧବଠାରୁ ବୌଦ୍ଧ ବିହାର, ମନୋରମ ବୁଦ୍ଧ, ବୋଧିସତ୍ତ୍ୱ, ମଞ୍ଜୁଶ୍ରୀ, ପଦ୍ମପାଣି ମୂର୍ତ୍ତିରାଜିର ଭଗ୍ନାବଶେଷକୁ ଉଦ୍ଧାର କରାଯାଇଛି ।

**ଜୈନଧର୍ମ :**

ସମଗ୍ର ଯାଜପୁର ଅଞ୍ଚଳ ବୌଦ୍ଧ ଧର୍ମ ପଛକୁ ଜୈନ ଧର୍ମର ଏକ ଅପୂର୍ବ ଗନ୍ତାଘର ଭାବେ ପ୍ରସିଦ୍ଧି ଲାଭ କରିପାରିଛି । ସର୍ବେକ୍ଷଣରୁ ଏକାଧାରରେ ବୌଦ୍ଧପୀଠମାନଙ୍କର ଜୈନ ମୂର୍ତ୍ତିରାଜି ଆବିଷ୍କୃତ ହୋଇ ଭୌମଙ୍କର ଯୁଗୀୟ କଳାକୃତିର ଝଲକକୁ ବହନ କରି ବିଦ୍ୟମାନ । ସର୍ବେକ୍ଷଣ ସମୟରେ ଯାଜପୁର ଜିଲ୍ଲା ଧର୍ମଶାଳା ଥାନା ଅନ୍ତର୍ଗତ ବେଢ଼ା ପାହାଡରୁ ଜୈନ ତୀର୍ଥଙ୍କର, ମହାବୀର, ମୂର୍ତ୍ତିମିଳିଥିବା ବେଳେ, ବୌଦ୍ଧ ପୀଠ ଏରଡାରୁ ଋଷଭନାଥ, ଯାଜପୁର ରୋଡ, ବ୍ରାହ୍ମଣ ଦେବୀଠାରୁ ଜୈନ ଚୌମୁଖ, ଶାସନ ଦେବୀ, ତୀର୍ଥଙ୍କର ମୂର୍ତ୍ତି, ଯାଜପୁର ବରୁଆଡି, ତରାଙ୍ଗ ସାଗରପୁର, କୁଆଁସ, ଛତ୍ରପଡା, ଶିବଦାସପୁର, କଣ୍ଟାବଣିଆ, କଇଥାପଡିଆ, ଦଶାଶ୍ୱମେଧ ଘାଟଠାରୁ ଏକାଧାରରେ ଜୈନ ତୀର୍ଥଙ୍କର, ମାହବୀର ମୂର୍ତ୍ତି, ଋଷଭନାଥ ମୂର୍ତ୍ତିରାଜି ଆବିଷ୍କୃତ ହେବାଫଳରେ ସମଗ୍ର ଯାଜପୁର ଅଞ୍ଚଳ ଜୈନ ଧର୍ମର ଏକ ପ୍ରାଣ କେନ୍ଦ୍ର ଭାବେ ପ୍ରତିଷ୍ଠା ଲାଭ କରିଥିବା ବେଳେ, ପ୍ରସିଦ୍ଧ ପୀଠ ''ତରାଙ୍ଗ'' ମୋ ମତରେ ଜୈନ ଧର୍ମ ପୀଠ ''ତରଙ୍ଗ''ର ସ୍ମୃତିକୁ ସାକାରକରି ଅଦ୍ୟାବଧି ବିଦ୍ୟମାନ । ସେଇଭଳି ଜୈନ କୀର୍ତ୍ତିବିମଣ୍ଡିତ ''ଏରକଣା'' ଓ ଐରକୋଣା ଖୁବ୍ ସମ୍ଭବତଃ, ଜୈନ ଧର୍ମ ସମ୍ରାଟ ଐର ଖାରବେଳଙ୍କର ସ୍ମୃତିକୁ (ଜୈନ ଧର୍ମକୁ) ବହନ କରି ତିଷ୍ଠି ରହିପାରିଛି ।



ମଙ୍ଗଳପୁର ଥାନା ଅନ୍ତର୍ଗତ କଣ୍ଟାବଣିଆସ୍ଥିତ କଇଥା ପଡ଼ିଆ ଠାରେ ପ୍ରତିଷ୍ଠିତ ଜୈନ ତୀର୍ଥଙ୍କର ମୂର୍ତ୍ତି ।

**ବ୍ରାହ୍ମଣ୍ୟଧର୍ମ :**

ବୌଦ୍ଧ ଓ ଜୈନ ଧର୍ମ ପଛକୁ ସମଗ୍ର ଯାଜପୁର ଅଞ୍ଚଳ ବ୍ରାହ୍ମଣ୍ୟ ଶୈବ, ଶାକ୍ତ, ଗାଣପତ୍ୟ, ସୌର, ବୈଷ୍ଣବ, ନାଗ, ଧର୍ମର ଏକ ଭୂସ୍ୱର୍ଗ ଭାବେ ତିଷ୍ଠି ରହିପାରିଛି । ବସ୍ତୁତଃ, ଭାରତରେ ୫୧ ଟି ଶାକ୍ତ ପୀଠ ମଧ୍ୟରୁ ବିରଜା ଯାଜପୁର ହେଉଛି ଅନ୍ୟତମ



Digitized by PPRACHIN, SOA

ପ୍ରମୁଖ ଶାକ୍ତପୀଠ । ଏହି ପୀଠଟି ପ୍ରସିଦ୍ଧ ନାଭିଗୟା 'ବିରଜା କ୍ଷେତ୍ର' ବା 'ବୈତରଣୀ ତୀର୍ଥ' ନାମରେ ପ୍ରତିଷ୍ଠିତ । ଏକ ବ୍ୟାପକ କ୍ଷେତ୍ର ସର୍ବେକ୍ଷଣରୁ ଯାଜପୁର ଜିଲ୍ଲା ଧର୍ମଶାଳା ଥାନା ଅନ୍ତର୍ଗତ ବ୍ରାହ୍ମଣୀନଦୀ ତଟ ପୁରାଣ ପ୍ରସିଦ୍ଧ ଗୋକର୍ଣ୍ଣେଶ୍ୱର, ବଡ଼ଚଣା ଥାନା ଅନ୍ତର୍ଗତ ମହାବିନାୟକ, ଯାଜପୁର ତ୍ରିଲୋଚନ ପୁରସ୍ଥ ମନ୍ଦିର, ତିଳଭାଣ୍ଡେଶ୍ୱର ମନ୍ଦିର, ସିଦ୍ଧେଶ୍ୱର ମନ୍ଦିର, ଅମରେଶ୍ୱର ମନ୍ଦିର, ଖିଲାଟେଶ୍ୱର, ଆଖଣ୍ଡଳେଶ୍ୱର, ବେଲେଶ୍ୱର, ଗରୁଡେଶ୍ୱର ମନ୍ଦିର ଯାଜପୁର ଅଞ୍ଚଳରେ ଶୈବଧର୍ମର ପ୍ରାବଲ୍ୟତାକୁ ପ୍ରତିପାଦିତ କରୁଥିବାବେଳେ; ୬୦ ଫୁଟ ଉଚ୍ଚ ତଥା ପଞ୍ଚରଥ ଶୈଳୀରେ ନିର୍ମିତ ଦ୍ୱିଭୂଜା-ମହିଷ ମର୍ଦ୍ଦିନୀ ଦୁର୍ଗା ବିରଜାଙ୍କ ମନ୍ଦିର, କୁଆଁଶସ୍ଥ ମା ମଙ୍ଗଳା ମନ୍ଦିର,ସମେତ ଧର୍ମଶାଳା ଚହଟା, କଣ୍ଡିଗଡିଆ, ତେନ୍ତୁଳିମାଳ, ଦଶାଶ୍ୱମେଧଘାଟଠାରୁ ମିଳିଥିବା ସପ୍ତମାତୃକା ଗଣ, ଚାମଣ୍ଡା, ତ୍ରିଲୋଚନେଶ୍ୱର ମନ୍ଦିର ପାର୍ଶ୍ୱାଞ୍ଚଳର ପ୍ରତିଷ୍ଠିତ ଅଷ୍ଟାଦଶ ଭୂଜା ଦେବୀ ଚାମଣ୍ଡା, ମନ୍ଦିର, ମହିଷ ମର୍ଦ୍ଦିନୀ ଦେବୀ ଦୁର୍ଗା, ବରାହୀ, ଇନ୍ଦ୍ରାଣୀ ମୂର୍ତ୍ତିରାଜି ମିଳିଛି, ଦଶାଶ୍ୱମେଧ ଘାଟଠାରେ ଅବସ୍ଥିତ ସପ୍ତମାତୃକା ମନ୍ଦିର, ସପ୍ତରଥ ଶୈଳୀରେ ନିର୍ମିତ ୬୦ ଫୁଟ ଉଚ୍ଚ ଜଗନ୍ନାଥ ମନ୍ଦିର, ବରାହନାଥସ୍ଥ ଶ୍ରୀଜଗନ୍ନାଥ ମନ୍ଦିର, ସୂର୍ଯ୍ୟ ମନ୍ଦିର ସମତେ ସପ୍ତାଶ୍ୱଚାଳିତ ଦୁଷ୍ପ୍ରାପ୍ୟ ସୂର୍ଯ୍ୟଦେବତା, ଉମା ମହେଶ୍ୱର, ଚାମଣ୍ଡା, ଶିବ, ପାର୍ବତୀ, ଗଣେଶ, ଗରୁଡେଶ୍ୱରଠାରୁ ଅଷ୍ଟଭୂଜା ଅନନ୍ତ ବାସୁଦେବ, ତରାଙ୍ଗ କୋଲଣଗିରିଠାରୁ ନାଗଦେବତା ମୂର୍ତ୍ତି ମିଳିବା ଫଳରେ ସମଗ୍ର ଯାଜପୁର ଅଞ୍ଚଳ ଏକାଧାରରେ ବୌଦ୍ଧ, ଜୈନ, ଶୈବ, ଶାକ୍ତ, ଗାଣପତ୍ୟ, ସୌର, ନାଗ, ବୈଷ୍ଣବ ଧର୍ମର ଏକ ଭୂସ୍ୱର୍ଗ ତଥା ଏକ ଅଭୁତ ପୂର୍ବ ସର୍ବଧର୍ମ ସମନ୍ୱୟ ପୀଠ ଭାବେ ସମଗ୍ର ଓଡ଼ିଶା, ଭାରତ ତଥା ବିଶ୍ୱରେ ପ୍ରତିଷ୍ଠା ଓ ପ୍ରସିଦ୍ଧି ଲାଭ କରି ଓଡିଶାରେ ଗାରିମାମୟ ଐତିହ୍ୟର ଆଲେଖ୍ୟକୁ ବହନ କରି ଆସ୍ଥ ନିକଟରେ ବିଦ୍ୟମାନ ।

ଏହା ସହିତ ବଡ଼ଚଣା ଥାନାର ବଡ଼ଘୁମୁରି ପାହାଡରୁ ଭୂମିସ୍ପର୍ଶ ମୁଦ୍ରାରେ ବୁଦ୍ଧମୂର୍ତ୍ତି, ସ୍ତୁପରାଜି, ମହିଷମର୍ଦ୍ଦିନୀ ଦୁର୍ଗା, ନାଗ, ଇନ୍ଦ୍ର, ବରୁଣ, କୁବେର ଓ ଶିବ ମୂର୍ତ୍ତି ମିଳିଛି । ଏହି ଜିଲ୍ଲାର ପ୍ରସିଦ୍ଧ ବ୍ରାହ୍ମଣ ଦେବୀ ପାର୍ଶ୍ୱାଞ୍ଚଳରୁ ମାଙ୍କଡାପଥରରେ ନିର୍ମିତ ବୁଦ୍ଧ ମୂର୍ତ୍ତି, ଜୈନ, ଚୈତ୍ୟ, ତୀର୍ଥଙ୍କର ମୂର୍ତ୍ତି, ଦର୍ପଣ ତହସିଲର ତେଲିଗଡ଼ଠାରୁ ମାଙ୍କଡା ପ୍ରସ୍ତର ନିର୍ମିତ ମଧ୍ୟଯୁଗୀୟ ଦୁର୍ଗର ଭଗ୍ନାବଶେଷ ରହିଛି ।

ଧର୍ମମଙ୍ଗଳ କାବ୍ୟ ଅନୁଯାୟୀ ଯାଜପୁର ଅଞ୍ଚଳରେ ଭଗବାନ ବିଷ୍ଣୁ ଯବନ ଅବତାର ଗ୍ରହଣ ପୂର୍ବକ ଉଭୟ ହିନ୍ଦୁ ଓ ମୁସଲମାନ (ଇସ୍‌ଲାମ ଧର୍ମ) ଧର୍ମର ସମନ୍ୱୟ ସାଧିତ ହେବା ଆଲେଖ୍ୟକୁ ଆଲମଗିରିସ୍ଥ ସତ୍ୟପୀର ଦରଘାସା ପୀଠ ପ୍ରମାଣିତ କରୁଛି ।



ସୌଜନ୍ୟ :



**ଡକ୍ଟର ହରିଶ୍ ଚନ୍ଦ୍ର ପୃଷ୍ଟି**
*ଇତିହାସ ବିଭାଗ ମୁଖ୍ୟ,*
ସାହାସପୁର ମହାବିଦ୍ୟାଳୟ, ବାଲିଚନ୍ଦ୍ରପୁର



Digitized by PPRACHIN, SOA

# ଶିଶୁ ସାହିତ୍ୟକୁ ଯାଜପୁର ଜିଲ୍ଲାର ଦାନ

ଶିଶୁ ହସିଲେ ଦୁନିଆ ହସେ । ଶିଶୁମାନଙ୍କୁ ହସେଇବା ପାଇଁ, ସେମାନଙ୍କୁ ମଣିଷ ଭଳି ମଣିଷ ଗଢ଼ି ତୋଳିବା ପାଇଁ ଶିଶୁ ସାହିତ୍ୟିକମାନଙ୍କର ପ୍ରମୁଖ ଭୂମିକା ରହିଛି । ''ଶିଶୁ ସାହିତ୍ୟ'' ସାହିତ୍ୟର ଏକ ଅନ୍ୟତମ ଅଙ୍ଗ । ଶିଶୁ ସାହିତ୍ୟିକମାନଙ୍କୁ କୌଣସି ଭୌଗଳିକ ସୀମାରେଖା ଭିତରେ ଆବଦ୍ଧ କରାଯାଇ ନ ପାରେ । ତଥାପି ଯାଜପୁର ଜିଲ୍ଲା ସଂପର୍କରେ ପ୍ରକାଶ ପାଉଥିବା ଏହି ସ୍ମରଣିକାରେ ସାରସ୍ୱତ ଭୂମି ଯାଜପୁର ଜିଲ୍ଲାରେ ଜନ୍ମଲାଭ କରିଥିବା କେତେ ଜଣ ବିଶିଷ୍ଟ ତଥା ନବାଗତ ଶିଶୁ ସାହିତ୍ୟିକମାନଙ୍କର ସଂକ୍ଷିପ୍ତ ଜୀବନୀ ପ୍ରକାଶ କରାଗଲା । ଏତିକି କହିଲେ ଭୁଲ୍ ହେବ ନାହିଁ ଯେ, ଓଡିଶାର ଅଧିକାଂଶ ଶିଶୁ ସାହିତ୍ୟିକମାନଙ୍କର ଜନ୍ମସ୍ଥାନ ହେଉଛି ଯାଜପୁର ଜିଲ୍ଲା ।

## ✓ ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀ

**ଜନ୍ମ** : ୧୯୦୩ ମସିହା ସେପ୍ଟେମ୍ବର ୧୦ ତାରିଖ,

**ଜନ୍ମସ୍ଥାନ**: ମୁରାରିପୁର, ଧର୍ମଶାଳା    **ମୃତ୍ୟୁ** : ୧୯୯୪ ଡ଼ିସେମ୍ବର, ୨୩

**ପ୍ରକାଶିତ ପୁସ୍ତକ :-**

କୁହୁକୁହୁ, ଗୁଣୁଗୁଣୁ, ରୁଣୁଝୁଣୁ, କୁଲୁକୁଲୁ, କଷିକାକୁଡି, ଅକଲ ମକଲ ଟକଲ ଟିଆଁ, ପିଲାଙ୍କ ପଶୁପକ୍ଷୀ ପୁରାଣ, ଶିଶୁତୋଷ ରାମାୟଣ, ଉଦୟଭାନୁ, ମୋ ଦେଶ ପ୍ରଭୃତି ଅନେକ ପୁସ୍ତକ ।

**ପୁରସ୍କାର :**

୧୯୫୪ ମସିହାରେ 'ଘଣ୍ଟି ଘାଗୁଡି' ପୁସ୍ତକ ପାଇଁ ରାଜ୍ୟ ସାହିତ୍ୟ ଏକାଡେମୀ ପୁରସ୍କାର, ୧୯୬୬ ମସିହାରେ 'ପିଲାଙ୍କ ପଶୁପକ୍ଷୀ ପୁରାଣ' ପୁସ୍ତକ ପାଇଁ 'କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର, ୧୯୭୨ରେ ଓଡିଶା ସାହିତ୍ୟ ଏକାଡେମୀ, ବିଷୁବ ମିଳନ, ଉତ୍କଳ ସାହିତ୍ୟର ହୀରକ ଜୟନ୍ତୀ ଉତ୍ସବ, ନିଖିଳ ଉତ୍କଳ ଶିଶୁମେଳା ସମିତି, ଚଣ୍ଡୀଖୋଲ, ୧୯୭୬ରେ ଓଡ଼ିଶା ଶିଶୁ ସାହିତ୍ୟ କମିଟି ତରଫରୁ ସମ୍ମାନୀତ ।

**ଅନ୍ୟାନ୍ୟ :**

ଗୋକର୍ଣ୍ଣିକା ସାହିତ୍ୟ ସମାଜ, ଧର୍ମଶାଳା ଅନୁକୂଲ୍ୟରେ ପ୍ରତିବର୍ଷ ପଣ୍ଡିତ ତ୍ରିପାଠୀଙ୍କ ଜୟନ୍ତୀ ଅବସରରେ ଓଡ଼ିଶାର ଜଣେ ପ୍ରତିଷ୍ଠିତ ଶିଶୁ ସାହିତ୍ୟିକଙ୍କୁ ସମ୍ମାନୀତ କରାଯାଉଅଛି ।

* * *



Digitized by PPRACHIN, SOA

## ଧନେଶ୍ୱର ସାମଲ

**ଜନ୍ମ** : ୧୯୩୨ ମସିହା

**ଜନ୍ମସ୍ଥାନ:** ବାହାଦୂର ନଗର, ପୋ.-ଚାରିନଙ୍ଗଳ, ଭାୟା-ବାଲିଚନ୍ଦ୍ରପୁର, (ବଡ଼ଚଣା ନିର୍ବାଚନ ମଣ୍ଡଳୀ)

**ପ୍ରକାଶିତ ପୁସ୍ତକ :-** ଦେଶ ବିଦେଶର ରୂପ କଥା, ରୂପ କାହାଣୀ ସେଟ୍, ଭୂତର ଘୁଙ୍ଗୁର ନାଚ, ମଞ୍ଜୁ ସେନ୍‌ଙ୍କ ଅଜବ ଅଭିମାନ, ଦୁଷ୍ଟ ରାଜ କନ୍ୟା, ମଧୁକଣ୍ଠ ମଧୁସୂଦନ, ପଲ୍ଲୀଚିତ୍ର ଓ ନନ୍ଦ କିଶୋର ।

**ପୁରସ୍କାର :-** 'ସଂସାର' ପତ୍ରିକା, ତଥା ଅନେକ ଅନୁଷ୍ଠାନ ପକ୍ଷରୁ ସମ୍ମାନୀତ ।

**ଅନ୍ୟାନ୍ୟ :-** କେନ୍ଦ୍ର ଶିଶୁ ସାହିତ୍ୟିକ ପୁରସ୍କାର ପାଇଁ ଏନ.ସି.ଇ.ଆର.ଟି ନୂଆଦିଲ୍ଲୀ ତରଫରୁ ଓଡ଼ିଆ ବହିଗୁଡ଼ିକର ଅନତ୍ୟମ ମୂଲ୍ୟାୟନ ଅଧିକାରୀ ଭାବେ ୧୯୮୭ ମସିହାରେ ନିଯୁକ୍ତ ।

*** 

## ବଟକୃଷ୍ଣ ଓଝା

**ଜନ୍ମ** : ୧୯୩୬ ମସିହା **ଜନ୍ମସ୍ଥାନ:** ଚହଟା, ପୋ.-ଧର୍ମଶାଳା

**ପ୍ରକାଶିତ ପୁସ୍ତକ :-** ମୋ କୁନି କୁନି କବିତା (ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କୃତ), କଥା କି କୁହୁକ (ଶିଶୁ ସାହିତ୍ୟ ସମିତି, ଓଡ଼ିଶା ପୁରସ୍କୃତ ।)

**ପୁରସ୍କାର :-** ପ୍ରଜାତନ୍ତ୍ର ବିଷୁବ ମିଳନ, କୁଆଁତାରା, ତଥା ଅନେକ ସାହିତ୍ୟାନୁଷ୍ଠାନ ତରଫରୁ ସମ୍ମାନୀତ ଓ ପୁରସ୍କୃତ ।

*** 

## ବୀର କିଶୋର ପାଢ଼ୀ

**ଜନ୍ମ** : ୧୯୩୦ ମସିହା **ଜନ୍ମସ୍ଥାନ:** କୋଟପୁର (ଧର୍ମଶାଳା)

**ପ୍ରକାଶିତ ପୁସ୍ତକ :-** କୁଆଁତାରା, କୁନିମୁନି କବିତା, ସୁନାସଂସାର, ଜାଗୁଜାଇ ଜ୍ୟୋତି, ଜଣାଣ ଜ୍ୟୋତି, ସ୍ମୃତିର ସଙ୍କେତ, ଅନାବନା କବିତା ।

**ପୁରସ୍କାର :-** କୁଆଁତାରା ଓ କୁନ୍‌ମୁନି କବିତା, ନିଖିଳ ଉତ୍କଳ ଶିଶୁ ମେଳା ସମିତି ପକ୍ଷରୁ ରାଜ୍ୟପାଳଙ୍କ ଦ୍ୱାରା ପୁରସ୍କୃତ, ସଂପାଦକ 'ଗାଁ ଭୂଇଁ' ।

*** 



Digitized by PPRACHIN, SOA

## ୰ ବୀରେନ୍ଦ୍ର କୁମାର ଭୂୟାଁ

**ଜନ୍ମ** : ୧୯୩୫ ମସିହା **ଜନ୍ମସ୍ଥାନ:** ନୀଳାପଦା, ଯାଜପୁର ବ୍ଲକ ।

**ପ୍ରକାଶିତ ପୁସ୍ତକ :-** କୁନୁମୁନୁ, ବଗବଗୁଲୀ, ମହାତ୍ମା ଗାନ୍ଧୀଙ୍କ ମହତ କଥା ।

**ପୁରସ୍କାର :-** ୧୯୮୬ ଓ ୮୭ ମସିହାରେ ଜନସାହିତ୍ୟ ପ୍ରତିଯୋଗୀତାରେ ଭାରତ ସର କାରଙ୍କଠାରୁ ପୁରସ୍କୃତ । ୧୯୮୯ ବିଷୁବ ମିଳନରେ ସମ୍ମାନୀତ । ଆକାଶବାଣୀ କଟକ କେନ୍ଦ୍ରର ଗୀତିକାର । ତାଙ୍କ ସ୍ମୃତିରେ ପ୍ରତିବର୍ଷ ଜଣେ କୃତୀ ଶିଶୁ ସାହିତ୍ୟିକଙ୍କୁ ପୁରସ୍କାର ପ୍ରଦାନ କରାଯାଉଛି ।

❋ ❋ ❋

## ନନ୍ଦ କିଶୋର ସିଂହ

**ଜନ୍ମ** : ୧୯୪୨ ମସିହା **ଜନ୍ମସ୍ଥାନ:** କୋରେଇ

**ପ୍ରକାଶିତ ପୁସ୍ତକ :-** ରଙ୍ଗବେରଙ୍ଗ, ସାବାସ୍ ଟୁଟୁ, ମଜା କାହାଣୀ, ମୋ ଗାଁ ହାଟ, ଫେରିବାଲା, ମୋ ଗାଁ ମୋ ମାଆ, ସୁନା ଚଷମା, ଗୁରୁ ଦକ୍ଷିଣା ।

**ପୁରସ୍କାର :-** ବିଷୁବ ମିଳନ, ସମ୍ବଲପୁର ଶିଶୁ ସାହିତ୍ୟ ପରିଷଦ, କୁଆଁତାରା, ସଂସାର ଓ ବର୍ତ୍ତିକା ସମ୍ମାନ ।

**ଅନ୍ୟାନ୍ୟ :** ଆକାଶବାଣୀ କଟକ କେନ୍ଦ୍ରରୁ ବହୁ ଗପ, କବିତା, ସଙ୍ଗୀତ ଓ ନାଟକ ପ୍ରଚାରିତ ।

❋ ❋ ❋

## ନଟବର ସାହୁ

**ଜନ୍ମ** : ୧୯୩୯ ମସିହା **ଜନ୍ମସ୍ଥାନ:** ବାଲିଚନ୍ଦ୍ରପୁର (ବଡ଼ଚଣା)

**ପ୍ରକାଶିତ ପୁସ୍ତକ :-** ଗୋଟିଏ ଅଲିଭା ଜ୍ୟୋତି (ରାଜ୍ୟ ସରକାରଙ୍କ ପୁରସ୍କୃତ), ଆଉ ଏକ ଅଧ୍ୟାୟର ଆରମ୍ଭ ( କେନ୍ଦ୍ର ସରକାରଙ୍କ ପୁରସ୍କୃତ), ଅଜବ ଦେଶର ଗଲିଭର, ତମ ପାଇଁ କବିତା, ଅମର ବୈଜ୍ଞାନିକ ମେଘନାଦ ଶାହା ।

**ପୁରସ୍କାର :-** ଗୋକର୍ଣ୍ଣିକା ସାହିତ୍ୟ ସମାଜ' ଧର୍ମଶାଳାରୁ ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀ ଶିଶୁ ସାହିତ୍ୟ ସମ୍ମାନ ସମେତ ଅନେକ ସମ୍ମାନ ଓ ପୁରସ୍କାରର ବିଜେତା । 'ଜନ ବୟେଡ଼ ଓ ଟେଲି ଭିଜନ ପ୍ରବନ୍ଧ ପାଠ୍ୟ ପୁସ୍ତକରେ ସ୍ଥାନିତ । ଆକାଶବାଣୀ ଓ ବିଭିନ୍ନ ପତ୍ର ପତ୍ରିକାର ନିୟମିତ ଲେଖକ ।

❋ ❋ ❋

## ଭଗବାନ ପାଢ଼ୀ

**ଜନ୍ମ** : ୧୯୪୦ ମସିହାସ **ଜନ୍ମସ୍ଥାନ:** ଲକ୍ଷ୍ମୀନଗର, ଶଙ୍ଖଚିଲା ।

**ପ୍ରକାଶିତ ପୁସ୍ତକ :-** ପିଲାଏ ହସିଲେ ଦୁନିଆ ହସେ, କଥା ।

**ପୁରସ୍କାର :-** ବିଷୁବ ମିଳନ, କୁଆଁତାରା, ସଂସାର, ବିଲୁଆ ନନା ପ୍ରଭୃତି ଶିଶୁ ପତ୍ରିକା ପକ୍ଷରୁ ସମ୍ମାନୀତ ।

❋ ❋ ❋



Digitized by PPRACHIN, SOA

## ପ୍ରଫୁଲ୍ଲ କୁମାର ଗିରି

ଜନ୍ମ : ୧୯୪୫ ମସିହା ଜନ୍ମସ୍ଥାନ: ଗ୍ରା/ପୋ.-ବାଲିବିଲି,ବରୀ

**ପ୍ରକାଶିତ ପୁସ୍ତକ :-** ମଣିଷ ନୁହନ୍ତି ଦେବତା, ଏଇ ମୋ ଛୋଟ ଗାଆଁ, ଯାହାକୁ ରଖିବେ ଅନନ୍ତ, ଆଲୁଅ ଟିକେ ଲୋଡ଼ା ।

**ପୁରସ୍କାର :-** ବିଷୁବ ମିଳନ, ରାଜ୍ୟସ୍ତରୀୟ ଶିଶୁ ସାହିତ୍ୟିକ ସମ୍ମିଳନୀ, କୁନିରାଇଜ, କୁଆଁତାରା, ଚଲାପଥ, ସଂସାର, ଗୋକର୍ଣ୍ଣିକା, ପରିଚୟ, ଝଙ୍କତ ସାହିତ୍ୟ ପୁରସ୍କାର ।

**ଅନ୍ୟାନ୍ୟ :-** ଉତ୍ତରଣ, ଚେତନା, ମୋତି ମାଣିକ ଓ ଚର୍ଚ୍ଚାର ସଂପାଦନା ସହିତ ସଂପୃକ୍ତ ।

❋ ❋ ❋

## ଡଃ ଦିଗରାଜ ବ୍ରହ୍ମା

ଜନ୍ମ : ୧୯୪୯ ମସିହା ଜନ୍ମସ୍ଥାନ: ରୁଦ୍ରପୁର, ଭାୟା-ଛତିଆ ।

**ପ୍ରକାଶିତ ପୁସ୍ତକ :-** ଆସ ସଙ୍ଗାତ ବଣକୁ ଯିବା, ଶିକ୍ଷା ଦୁନିଆର କଥା ରାଇଜ, ବିବାହ ଏକ ଯଜ୍ଞ, ମୁନା ଡାକ୍ତର, ଚକା ଚକା ଭଉଁରୀ ।

**ପୁରସ୍କାର :-** ରାଜ୍ୟସ୍ତରୀୟ ଶିଶୁ ସାହିତ୍ୟିକ ସମ୍ମିଳନୀ (୧୯୮୦), କୁଆଁତାରା, ଓଡ଼ିଶା ଶିଶୁ ସାହିତ୍ୟ ଗବେଷଣା ପରିଷଦ ତରଫରୁ ପୁରସ୍କୃତ ଓ ଶିଶୁ ସାହିତ୍ୟରେ ଡକ୍ଟରେଟ୍ ।

❋ ❋ ❋

## ଡଃ ନରେନ୍ଦ୍ର ପ୍ରସାଦ ଦାସ

ଜନ୍ମ : ୧୯୪୨ ମସିହା ଜନ୍ମସ୍ଥାନ: କଳକଳା (ବଡ଼ଚଣା)

**ପ୍ରକାଶିତ ପୁସ୍ତକ :-** ବିଜ୍ଞାନ ଓ ବିଜ୍ଞାନୀ, ଠେକୁଆ ଚାଷ, ସ୍ୱାସ୍ଥ୍ୟ ଗୀତ, ଗଛ କାଟନା ଜୀବ ମାରନା, ବଉଳ ପାଇଁ, ବିଜ୍ଞାନ କଥା, ବିଜ୍ଞାନ ଭୋଜି, ଆମେ ଓ ଆମ ପରିବେଶ, ଦେହ ଏକ କାରଖାନା, ପରିବେଶ ଚେତନା ।

**ପୁରସ୍କାର :-** ୧୯୭୦ ମସିହାରେ ବିଷୁବ ମିଳନରେ ଶିଶୁ ସାହିତ୍ୟ ପୁରସ୍କାର ।

❋ ❋ ❋

## ରାଜ କିଶୋର ପାଢ଼ୀ

ଜନ୍ମ : ୧୯୪୨ ମସିହା ଜନ୍ମସ୍ଥାନ: କୋଟପୁର (ଧର୍ମଶାଳା)

**ପ୍ରକାଶିତ ପୁସ୍ତକ :-** ରଗଡଙ୍ଗ ଝଗଡଙ୍ଗ, ବାରମାସୀ ଚଢ଼େଇ ।

**ଅନ୍ୟାନ୍ୟ :-** 'ଗୋକର୍ଣ୍ଣିକା' ସାହିତ୍ୟ ପତ୍ରିକାର ପୂର୍ବତନ ସଂପାଦକ । ଶିଶୁ ସାହିତ୍ୟ ଗବେଷକ । ସେ ଜଣେ ଅନୁବାଦକ ।

❋ ❋ ❋



Digitized by PPRACHIN, SOA

## ଡଃ ରାମଚନ୍ଦ୍ର ମହାନ୍ତି

**ଜନ୍ମ** : ୧୯୫୦ ମସିହା

**ଜନ୍ମସ୍ଥାନ:** ହଳଦି ବସନ୍ତ, ପୋ.-ଧାରପୁର, ଭାୟା-ବରୀ, ଯାଜପୁର ।

**ପ୍ରକାଶିତ ପୁସ୍ତକ :-** ଆମ ଗାଁ ଆମ ମାଆ, ଜାଣିଲେ ଜିଣିବା, ପ୍ରଗତି ଭାଗବତ, ଅକ୍ଷପୁଟୁଳି, ଦୀପ, ରୂପ ରୂପାନ୍ତର, ଷାଠିଏ ସନେଟ୍, ମୁଁ ଏକ ଅନେକ, ପଥ ନିର୍ଦ୍ଦେଶ ।
**ପୁରସ୍କାର :-** 'ପ୍ରଗତି ଭାଗବତ' ପାଇଁ କେନ୍ଦ୍ରସରକାର, ୧୯୭୯ରେ ବିଷୁବ ମିଳନରେ ପୁରସ୍କୃତ ଓ କୁଆଁତାରା ପକ୍ଷରୁ ୧୯୮୯ ମସିହାରେ ସମ୍ମାନୀତ ।

❋ ❋ ❋

## ଶ୍ରୀମତୀ ରେଖା ଦାସ

**ଜନ୍ମ** : ୧୯୪୪ ମସିହା **ସଂପର୍କ:** କଳକଳା

**ପ୍ରକାଶିତ ପୁସ୍ତକ :-** ଦେହ ପରିମଳ, ଆମେ କ'ଣ ଖାଇବା, ପିଲାଙ୍କ ଚିଡିଆଖାନା, ଆମେ ଓ ଆମ ପରିବେଶ ।
**ପୁରସ୍କାର :-** ୧୯୭୨ରେ ବିଷୁବ ମିଳନ, ୧୯୮୫ରେ ଭାରତ ସରକାରଙ୍କ ପୌଢ଼ ଶିକ୍ଷା ନିର୍ଦ୍ଦେଶାଳୟ ଦ୍ୱାରା ପୁରସ୍କୃତ ।

❋ ❋ ❋

## ମହେଶ୍ୱର ବଳ

**ଜନ୍ମ** : ୧୯୫୫ ମସିହା

**ଜନ୍ମସ୍ଥାନ:** ଗ୍ରା/ପୋ.-ଭାକୁଡ଼, ଭାୟା-କୁଆଁପାଳ (ବଡ଼ଚଣା ବ୍ଲକ), ଯାଜପୁର

**ପ୍ରକାଶିତ ପୁସ୍ତକ :-** ପାତି ହଂସର କୁହୁକ, ମାଙ୍କଡ ମାଇଲା ମଜା, ହାଟୁଆର ଯାଦୁଖେଳ, ବିଜାସୁଣି ଗାଁର କାହାଣୀ ମୁଣି, ରଘୁ ଅରକ୍ଷିତ, କାଈ ଅଭିଯାନ ଓ ନିର୍ବାସିତା ।
**ପୁରସ୍କାର :-** 'ପାତିହଂସର କୁହୁକ' ପୁସ୍ତକ ପାଇଁ ଓଡ଼ିଶା ସରକାରଙ୍କ 'ଶିଶୁ ସାହିତ୍ୟ ସମିତି' ତରଫରୁ ପୁରସ୍କୃତ, ନିର୍ଭୀକ ସାମ୍ବାଦିକତା ଓ ସେବା ସଂଗଠନ ପାଇଁ ଗୋକର୍ଣ୍ଣିକା, ଚାଚାଶିଶୁ କିଶୋର ଅନୁଷ୍ଠାନ, କଟକ ର 'ବଉଳ' ଅନୁଷ୍ଠାନ, ସଚ୍ଚିଜେନା ସ୍ମୃତି ସଂସଦ ପକ୍ଷରୁ ସମ୍ମାନିତ ।
**ଅନ୍ୟାନ୍ୟ :-** ୧୯୭୫ ମସିହାରୁ ଶିଶୁ କିଶୋର ପତ୍ରିକା 'କିଶୋର ଜ୍ୟୋତି'ର ସଂପାଦକ । ଆକାଶବାଣୀ କଟକ କେନ୍ଦ୍ରରୁ ଗୀତିନାଟ୍ୟ ଗପ ଓ କବିତା ବହୁଳ ପ୍ରଚାରିତ ଓ ଗତ ୭୪ ମସିହାରୁ ପ୍ରଚାରିତ କାଈଅଭିଯାନ ଗୀତିନାଟ୍ୟ ତାଙ୍କର ସଫଳ କୃତୀ ।

❋ ❋ ❋



Digitized by PPRACHIN, SOA

## ମାନସ ରଞ୍ଜନ ସାମଲ

**ଜନ୍ମ** : ୧୯୫୬ ମସିହା **ଜନ୍ମସ୍ଥାନ**: ସିଂହପୁର,ଥାନା-ବିଂଝାରପୁର

**ପ୍ରକାଶିତ ପୁସ୍ତକ :-** ରୁନ୍‌ମୁନ୍, ଝୁମୁରୁ ଝାଇଁ, କୁନିର କାହାଣୀ ମାଳା, ସହିବା ମହତ ଜନ।

**ପୁରସ୍କାର :-** 'ସହିବା ମହତ ଜନ ପାଣ୍ଡୁଲିପି ପାଇଁ କେନ୍ଦ୍ର ଶିଶୁ ସାହିତ୍ୟ ଏକାଡେମୀ ତରଫରୁ ପୁରସ୍କୃତ। ବିଷୁବ ମିଳନରେ ପୁରସ୍କୃତ।

**ଅନ୍ୟାନ୍ୟ :-** ଝୁମୁକା ଶିଶୁ ପତ୍ରିକା ଓ 'ଶିଳ୍ପୀ'ର ସଂପାଦକ। 'ଝୁମୁକା ଶିଶୁ ସାହିତ୍ୟ ସମ୍ମାନ'ର ପ୍ରତିଷ୍ଠାତା। ୧୯୭୮ ମସିହାରେ କେନ୍ଦ୍ରସରକାରଙ୍କ ପରିବାର କଲ୍ୟାଣ ବିଭାଗ ତରଫରୁ ଆୟୋଜିତ ସ୍ଲୋଗାନ ପ୍ରତିଯୋଗୀତାରେ ତାଙ୍କ ରଚିତ 'ଦେଶପାଇଁ ଜାତି ପାଇଁ ତିନିରୁ ବେଶି ନାହିଁ, ୨ୟ ସ୍ଥାନ ଅଧିକାର କରି ପୁରସ୍କୃତ ହୋଇଛନ୍ତି।

* * *

## ଗିରିଧାରୀ ସ୍ୱାଇଁ

**ଜନ୍ମ** : ୧୯୪୨ ମସିହା

**ଜନ୍ମସ୍ଥାନ**: ସାନ ସୁଆର, ମାର୍କଣ୍ଡପୁର ଭାୟା-ଦେବୀଦ୍ୱାର

**ପ୍ରକାଶିତ ପୁସ୍ତକ :-** ଗୀତଟିଏ ଗାଉ କଥାଟିଏ କହୁ, ଅମର ପ୍ରତିଭା, ବିଜ୍ଞାନ ରାଇଜ କାହାଣୀ, ରଘୁମାଷ୍ଟ୍ରେ। ଆକାଶବାଣୀ ଓ ବିଭିନ୍ନ ପତ୍ର ପତ୍ରିକାରେ ନିୟମିତ ଲେଖକ।

* * *

## ସରୋଜ କାନ୍ତ ପରିଡ଼ା

**ଜନ୍ମ** : ୧୯୫୮ ମସିହା **ଜନ୍ମସ୍ଥାନ**: ବାଲିଚନ୍ଦ୍ରପୁର

**ପ୍ରକାଶିତ ପୁସ୍ତକ :-** ବଣରାଇଜର ଗୁମର କଥା, ମୁନାର ମଇନା, ବଡ ମଣିଷଙ୍କ ଅଭୁଲା କଥା, ସୁନାର ସଂସାର, ଭକ୍ତ ଓ ଭଗବାନ, ପିତା ନୁହେଁ ମିଠା, ଗଣକବି ବୈଷ୍ଣବ ପାଣି, କବିଚନ୍ଦ୍ର କାଳିଚରଣ।

**ଅନ୍ୟାନ୍ୟ :-** ବିଷୁବ ମିଳନ, ଶିଶୁ ପତ୍ରିକା କଣ୍ଢେଇ, ଫୁଲ ଚନ୍ଦନ, ମାତୃଭୂମି, ଫ୍ଲୋରେନସ୍ ନାଇଟିଙ୍ଗେଲ ଫରୱ୍ୱାଡ କ୍ଲବ (କେନ୍ଦ୍ରାପଡା), ଗୋପବନ୍ଧୁ ଶତ ବାର୍ଷିକୀ କମିଟି, ଓଡ଼ିଶା ସରକାର, କଟକ, ପତରାଜପୁର ୟୁଥ ଆସୋସିଏସନ ଦ୍ୱାରା ଶିଶୁ ସାହିତ୍ୟିକ ଭାବେ ସମ୍ମାନୀତ, ଶିଶୁ କିଶୋର ପ୍ରତିକା, କିଶୋର ଜ୍ୟୋତି ଓ ଉଦୟ ଭାନୁ ସଂପାଦନା ସହ ସଂପୃକ୍ତ। ଆକାଶବାଣୀ କଟକ କେନ୍ଦ୍ରରୁ ଗପ ଓ କବିତା ନିୟମିତ ପ୍ରଚାରିତ।

* * *



Digitized by PPRACHIN, SOA

## ପ୍ରିୟନାଥ ମହାପାତ୍ର

**ଜନ୍ମ** : ୧୯୫୯ ମସିହା

**ଜନ୍ମସ୍ଥାନ**: ସିଦ୍ଧିପୁର, କଣ୍ଟିଗଡିଆ, ଯାଜପୁର ।

**ପ୍ରକାଶିତ ପୁସ୍ତକ** :- ଏଇ ଭାରତରେ, ଦେଶ ପାଇଁ ଯିଏ ଶହୀଦ ହେଲେ, ଲୁହ ଲହୁର ଧରିତ୍ରୀ, ପରାସ୍ତ ଖେଳାଳୀ, ଶିଶୁ ସାହିତ୍ୟିକ ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀ ପ୍ରଭୃତି ୪୦ ଖଣ୍ଡ ଶିଶୁ ପୁସ୍ତକର ରଚୟିତା ।

**ଅନ୍ୟାନ୍ୟ** :- ୧୯୮୩ ମସିହାରେ ବିଷୁବ ମିଳନ, ସଂଗ୍ରାମୀ ସଚ୍ଚିଦାନନ୍ଦ ସ୍ମୃତି ସଂସଦ, ତଥା ଅନେକ ଅନୁଷ୍ଠାନରୁ କୃତୀ ଶିଶୁ ସାହିତ୍ୟିକ ଭାବେ ସମ୍ମାନୀତ ଓ ପୁରସ୍କୃତ । ନିଖିଳ ଉତ୍କଳ ଶିଶୁ ମେଳା ସମିତି, ଚଣ୍ଡିଖୋଲର ପ୍ରତିଷ୍ଠାତା ଓ ସଭାପତି । ଆକାଶବାଣୀ କଟକ କେନ୍ଦ୍ରର ଜଣେ ନିୟମିତ ଗପ ଓ କବିତା ଲେଖକ । ସେ ମଧ ଜଣେ ସଫଳ ପ୍ରକାଶକ ।

*** 

## ଗଣେଶ୍ୱର ସ୍ୱାଇଁ

**ଜନ୍ମ** : ୧୯୬୪ ମସିହା **ଜନ୍ମସ୍ଥାନ**: ଆୟଶୌରୀ, ବାଲିଚନ୍ଦ୍ରପୁର

**କୃତୀ** :- ମାସିକ ଶିଶୁ ପତ୍ରିକା 'ଗୁଣ୍ଡୁଚି ମୂଷା'ର ସଂପାଦକ 'ବାଇଧନ ମୋର ଗାଇବ ଗୀତ' ରଚିତ, କିଶୋର ଜ୍ୟୋତି, ମନପବନ ଗୁଣ୍ଡୁଚି ମୂଷା, କଇଁଶେଇ, ପ୍ରଜାତନ୍ତ୍ର, ମାତୃଭୂମି, ସମୟ ପ୍ରଭୃତି ଅନେକ ପତ୍ର ପତ୍ରିକାରେ ଲେଖା ପ୍ରକାଶିତ । ଆକାଶବାଣୀ କଟକ କେନ୍ଦ୍ରରୁ ଗପ ଓ କବିତା ନିୟମିତ ପ୍ରଚାରିତ । ମାତୃଭୂମି ତଥା ଅନେକ ଅନୁଷ୍ଠାନରୁ ଶିଶୁ ସାହିତ୍ୟିକ ଭାବେ ସମ୍ମାନିତ ।

*** 

## ନଟବର ଦାଶ

**ଜନ୍ମ** : ୧୯୫୩ ମସିହା **ଜନ୍ମସ୍ଥାନ**: ମାଣ୍ଡୁକା, ବାଲିଚନ୍ଦ୍ରପୁର

**ପ୍ରକାଶିତ ପୁସ୍ତକ** :- 'ହସ ଗଣ୍ଠିଲି'

**ଅନ୍ୟାନ୍ୟ** :- ବିଭିନ୍ନ ଶିଶୁ ପତ୍ରିକାରେ ଲେଖା ପ୍ରକାଶିତ । ଆକାଶ ବାଣୀରୁ ଗପ ଓ କବିତା ପ୍ରଚାରିତ ।

*** 

## ମାୟାଧର ସାହୁ

**ଜନ୍ମସ୍ଥାନ**: ବଡମଙ୍ଗରାଜପୁର, ପୋ.-ଧର୍ମଶାଳା, ଯାଜପୁର ।

**ପ୍ରକାଶିତ ପୁସ୍ତକ** :- କାହାଣୀ କୁସୁମ, ଓ କୁନୁମୁନୁ କାହାଣୀ ।

**ପୁରସ୍କାର** :- ଓଡ଼ିଶା ସରକାରଙ୍କ ଶିଶୁ ସାହିତ୍ୟ ବିଭାଗ ତରଫରୁ 'କାହଣୀ କୁସୁମ'



Digitized by PPRACHIN, SOA

ଓ 'କୁନୁମୁନୁ କାହାଣୀ' ପାଇଁ ପୁରସ୍କୃତ, ରାଜ୍ୟ ଗବେଷଣା ଓ ପ୍ରଶିକ୍ଷଣ ପରିଷଦ, ଓଡ଼ିଶା ତରଫରୁ ନିବନ୍ଧ ଲିଖନ ପ୍ରତିଯୋଗୀତାରେ ୩ ଥର ପୁରସ୍କୃତ । ଆକାଶବାଣୀ କଟକ କେନ୍ଦ୍ରରୁ କାହାଣୀ ପ୍ରଚାରିତ ।

* * *

## ଶ୍ରୀମତୀ ଶୈଳବାଳା ମିଶ୍ର

**ଜନ୍ମ** : ୧୯୫୧ ମସିହା **ସଂପର୍କ**: ବାଲିଚନ୍ଦ୍ରପୁର,

**କୃତି** :- ମାତୃଭୂମି, ମାତୃଭାଷା, ସୁନାପିଲା, କିଶୋର ଜ୍ୟୋତି, ଶାବର, ଯୁଗବାର୍ତ୍ତା, ନାରୀସୁରକ୍ଷା, ପ୍ରଗତିବାଦୀ, ବାଣୀଚିତ୍ର ପ୍ରଭୃତି ପତ୍ର ପତ୍ରିକାରେ ଶିଶୁ ଉପଯୋଗୀ ଲେଖା ନିୟମିତ ପ୍ରକାଶିତ । ଆକାଶବାଣୀ କଟକ କେନ୍ଦ୍ରର 'ପ୍ରାଥମିକ ବିଦ୍ୟାଳୟ' କାର୍ଯ୍ୟକ୍ରମରେ ନିୟମିତ ଲେଖିକା ।

* * *

## ଭାଗ୍ୟଧର ସାହୁ

**ଜନ୍ମ** : ୧୯୫୩ ମସିହା

**ଜନ୍ମସ୍ଥାନ**: ବାଲିକୁଦା, ବଡ଼ଚଣାବ୍ଲକ, ଯାଜପୁର ।

**ପ୍ରକାଶିତ ପୁସ୍ତକ** :- ରୂପ ତାପସ (ଅନୁବାଦ), ଧରାବତରଣ, ନିମକ ହାରାମ, ଯୁଗାନ୍ତର ଗପ ଓ କବିତା ସଂକଳନ ।

**କୃତି** :- 'ଯୁଗାନ୍ତର' ସାଂସ୍କୃତିକ ଅନୁଷ୍ଠାନର ମୁଖପତ୍ର 'ଯୁଗାନ୍ତର'ର ସଂପାଦନା, ପତ୍ର ପତ୍ରିକାରେ ନିୟମିତ ଲେଖା ପ୍ରକାଶିତ । ଆକାଶବାଣୀ କଟକ କେନ୍ଦ୍ରରୁ ମଜାଗପ ଓ କବିତା ପ୍ରଚାରିତ ।

* * *

## ନାରାୟଣ ଚନ୍ଦ୍ର ବାରିକ

**ଜନ୍ମ** : ୧୯୫୫ ମସିହା

**ଜନ୍ମସ୍ଥାନ**: ଗୋବିନ୍ଦପୁର, ଏରବାଙ୍କ, ଭାୟା-ସୁଜନପୁର, ଯାଜପୁର

**ପ୍ରକାଶିତ ପୁସ୍ତକ** :- ସବୁଜ ସ୍ୱାକ୍ଷରର ମୃତ୍ୟୁ, କାଚଘରର ବୁଦ୍ଧ ମୂର୍ତ୍ତି ।

* * *

## ହରିହର ବାରିକ

**ଜନ୍ମସ୍ଥାନ**: ସା-ମାନପୁର, ପୋ-ଗୋବର୍ଦ୍ଧନପୁର, ଯାଜପୁର-୭୫୫ ୦୧୯

**ପ୍ରକାଶିତ ପୁସ୍ତକ** :- ପିଲାଙ୍କ ଗପ

**ଅନ୍ୟାନ୍ୟ** :- ଆକାଶବାଣୀ କଟକ କେନ୍ଦ୍ରର ଜଣେ ଗୀତିକାର ଓ ସମ୍ବାଦିକ, ସଂଗଠକ ।

* * *



AKSHASANDHAN

Digitized by PPRACHIN, SOA

ଏତଦ୍‌ବ୍ୟତିତ ବହୁ ଶିଶୁ ସାହିତ୍ୟିକ **ଶ୍ରୀ ରମେଶ ଚନ୍ଦ୍ର ସାମଲ** (ବାହାଦୂର ନଗର, ଚାରିନଙ୍ଗଳ), **ଶ୍ରୀ ଶଙ୍କର୍ଷଣ ସାମଲ** (ହରିପୁର, ବଡ଼ଚଣା), **ମନ୍ଦରଧର ସ୍ୱାଇଁ**, (ଚଣ୍ଡିଖୋଲ), **ଶ୍ରୀ ପୁରୁଷୋତ୍ତମ ପୃଷ୍ଟି** (ମକୁନ୍ଦପୁର, ବାଲିଚନ୍ଦ୍ରପୁର), **ଶ୍ରୀ ଅଜୟ ଜେନା** (ସଂପାଦକ-ଜଗା, ମାର୍ଥାପୁର), **ଶ୍ରୀ ଅକ୍ଷୟ କୁମାର ସାହୁ** (କଳାଶ୍ରୀ ଗୋପାଳପୁର), **ଶ୍ରୀ ନାରାୟଣ ରାଉତରାୟ** (ଉପୁଳାଇ, ଯାଜପୁରରୋଡ), **ଶ୍ରୀ ସତ୍ୟବ୍ରତ ପୁହାଣ** (ତିଗିରିଆ, ବଡ଼ଚଣା), **ଶ୍ରୀମତୀ କୁଞ୍ଜଲତା ଦାସ** (ଗ୍ରା-କୋରଡା ପିପଲ, ପୋ-ବାଲିବିଲି, ଭାୟା-ବରୀ), **ଶ୍ରୀ ଶରତ ଚନ୍ଦ୍ର ମହାନ୍ତି** (ରାହାଳ, ପୋ-କୃଷ୍ଣପୁର ଶାସନ, ଭାୟା-କଣ୍ଟିଗଡିଆ), **ଶ୍ରୀ ମଦନ ମୋହନ ପଟ୍ଟନାୟକ** (ସୁକିନ୍ଦା), **ଶ୍ରୀମତୀ କ୍ଷୀରୋଦମୟୀ ପଣ୍ଡା** (ଗ୍ରା-ଚିନ୍ତାପଲ୍ଲୀ, ଯାଜପୁର ବ୍ଲକ), **ଶ୍ରୀ ନିର୍ମଳ ପ୍ରସାଦ ଗିରି** (ରତ୍ନଗିରି), **ଶ୍ରୀ ଜଗନ୍ନାଥ ମିଶ୍ର** (ଗଡ଼ମଧୁପୁର), **ଶ୍ରୀ ଅନୀଲ କୁମାର ମହାନ୍ତି** (ଆଦମପୁର, ପୋ-ରାମବାଗ, ଯାଜପୁର), **ଶ୍ରୀମତୀ ସାରଥି ମହାପାତ୍ର** (ସିଦ୍ଧିପୁର, କଣ୍ଟିଗଡିଆ), **ଶ୍ରୀ ଧରଣୀଧର ପରିଡା** (ସୁନ୍ଦରିଆ), ଶ୍ରୀ ସରୋଜ କୁମାର ପଲେଇ (ବେଣାପୁର), **ଉମାକାନ୍ତ ପୃଷ୍ଟି** (କଡେଇ, ବଡ଼ଚଣା), **ଚାରୁବାଳା ପଣ୍ଡା** (ବାଲିଚନ୍ଦ୍ରପୁର) **ଶ୍ରୀମତୀ ପ୍ରିୟମ୍ବଦା ମହାନ୍ତି** (ରତ୍ନଗିରି), **ଶ୍ରୀ ଅନନ୍ତ ଚରଣ ସାମଲ** (ମଙ୍ଗରାଜପୁର, କାଏମା), **ଶ୍ରୀ ଚୌଧୁରୀ ଜ୍ଞାନ ରଂଜନ ସାମଲ** (ବିଦ୍ୟାଧରପୁର, ବଡ଼ଚଣା ବ୍ଲକ), **ଶ୍ରୀ ଏକାଦଶୀ ସେଠୀ** (ବାଲିଚନ୍ଦ୍ରପୁର), ପ୍ରଭୃତି ଅନେକ ଶିଶୁ ସାହିତ୍ୟିକ ସେମାନଙ୍କର ଲେଖନୀ ଚାଳନା କରି ଓଡ଼ିଶା ଶିଶୁ ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ କରିଅଛନ୍ତି ।

❒ ❒ ❒

ସୌଜନ୍ୟ

**ଶ୍ରୀ ସରୋଜକାନ୍ତ ପରିଡା**

ଗ୍ରା/ପୋ.-ବାଲିଚନ୍ଦ୍ରପୁର, ଜିଲ୍ଲା-ଯାଜପୁର





Digitized by PPRACHIN, SOA

# ଯାଜପୁର ଜିଲ୍ଲାର ପ୍ରଶାସନିକ ମୁଖ୍ୟ ଓ ଟେଲିଫୋନ ନମ୍ବର

| | | ଅଫିସ | ଘର |
|---|---|---|---|
| ଜିଲ୍ଲାପାଳ : ଶ୍ରୀ ସଞ୍ଜୟ ରସ୍ତୋଗୀ | (୦୬୭୨୮) | ୨୦୦୦୧ | ୨୦୩୩୦ |
| ଏସ.ପି. : ଶ୍ରୀ ରମେଶ ପ୍ରସାଦ ସିଂହ | (୦୬୭୨୬) | ୪୦୧୧୦ | ୪୦୧୧୨ |
| ଅତିରିକ୍ତ ଜିଲ୍ଲାପାଳ (ଏ.ଡି.ଏମ) | (୦୬୭୨୮) | ୨୦୪୭୯ | ୨୦୪୭୮ |
| ଅତିରିକ୍ତ ଜିଲ୍ଲା ଜଜ୍ | (୦୬୭୨୮) | ୨୦୧୨୨ | ୨୦୧୨୩ |
| ଉପ ଜିଲ୍ଲାପାଳ | (୦୬୭୨୮) | ୨୦୩୨୨ | ୨୦୦୫୦ |
| ଜିଲ୍ଲା କୃଷି ଅଧିକାରୀ | (୦୬୭୨୮) | ୨୦୦୫୬ | |
| ମୁଖ୍ୟ ଜିଲ୍ଲା ଚିକିତ୍ସା ଅଧିକାରୀ | (୦୬୭୨୮) | ୨୦୫୯୭ | |
| ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା | (୦୬୭୨୮) | ୨୦୦୫୪ | ୨୦୫୮୪ |
| ଜିଲ୍ଲା ପଶୁଚିକିତ୍ସା ଅଧିକାରୀ | (୦୬୭୨୮) | ୨୦୦୬୩ | |
| ସି.ଆଇ. (ସ୍କୁଲ) | (୦୬୭୨୮) | ୨୦୦୨୬ | |
| ଏସ.ଡି.ପି.ଓ | (୦୬୭୨୮) | ୨୦୦୪୨ | |
| ଜିଲ୍ଲା ସୂଚନା ଓ ଲୋକସମ୍ପର୍କ ଅଧିକାରୀ | (୦୬୭୨୮) | ୨୦୦୦୪ | |
| ଜିଲ୍ଲା ପରିଚାଳକ (ଖାଦ୍ୟ ଓ ଯୋଗାଣ) | (୦୬୭୨୮) | ୨୦୦୫୫ | ୨୦୦୮୮ |
| ଅବକାରୀ ସୁପରିନ୍‌ଟେଣ୍ଡେଣ୍ଟ | (୦୬୭୨୮) | ୨୦୫୯୮ | |
| ଫାୟାର ଷ୍ଟେସନ | (୦୬୭୨୮) | ୨୦୦୩୩ | ୧୦୧ |
| ଜିଲ୍ଲା ଜରୁରୀ ଅଧିକାରୀ | (୦୬୭୨୮) | ୨୦୩୨୨ | |
| ଜିଲ୍ଲା ନିର୍ବାଚନ ଅଧିକାରୀ | | ୨୦୫୬୮ | |
| ଆଞ୍ଚଳିକ ପରିବହନ ଅଧିକାରୀ (RTO) | (୦୬୭୨୫) | ୨୨୨୦ | |
| ହୃଷିକେଶ ମହାପାତ୍ର, *ସଭାପତି* ଯାଜପୁର ଜିଲ୍ଲା ସାମ୍ବାଦିକ ସଂଘ | (୦୬୭୨୮) | ୨୦୬୮୩ | |
| ମହେଶ୍ୱର ବଳ, ସାଧାରଣ ସଂପାଦକ ଯାଜପୁର ଜିଲ୍ଲା ସାମ୍ବାଦିକ ସଂଘ | (୦୬୭୨୫) | ୮୫୨୨ | |





Digitized by PPRACHIN, SOA

# ଯାଜପୁର ଜିଲ୍ଲା ସାମ୍ବାଦିକ ସଂଘର କର୍ମକର୍ତ୍ତାବୃନ୍ଦ

ଉପଦେଷ୍ଟା : ଶ୍ରୀ ନରହରି ମହାନ୍ତି
ଶ୍ରୀ ଚନ୍ଦ୍ରମଣି ପଣ୍ଡା
ଶ୍ରୀ କୃଷ୍ଣଚନ୍ଦ୍ର ସାମଲ

ସଭାପତି : ଶ୍ରୀ ହୃଷିକେଶ ମହାପାତ୍ର

କାର୍ଯ୍ୟକାରୀ ସଭାପତି : ଶ୍ରୀ ରାଜ କିଶୋର ଧୀର

ଉପ ସଭାପତି : ଶ୍ରୀ ଜୟନାରାୟଣ ମହାପାତ୍ର
ଶ୍ରୀ ବଟକୃଷ୍ଣ ପରିଡା

ସାଧାରଣ ସଂପାଦକ : ଶ୍ରୀ ମହେଶ୍ୱର ବଳ

ସଂପାଦକ : ଶ୍ରୀ ପୂର୍ଣ୍ଣଚନ୍ଦ୍ର ଶତପଥି
ଶ୍ରୀ ବଟକୃଷ୍ଣ ଦାସ

କୋଷାଧ୍ୟକ୍ଷ : ଶ୍ରୀ ଇନ୍ଦ୍ରମଣି ନାୟକ

କାର୍ଯ୍ୟକାରୀ କମିଟି ସଭ୍ୟ : ଶ୍ରୀ ଆନନ୍ଦ ଚନ୍ଦ୍ର ସାହୁ
ଶ୍ରୀ ପ୍ରିୟନାଥ ମହାପାତ୍ର
ଶ୍ରୀ ପ୍ରଫୁଲ୍ଲ ଶତପଥି
ଶ୍ରୀ ରମାକାନ୍ତ ଜେନା
ଶ୍ରୀ ପ୍ରଭାତ ରାଉତ ରାୟ
ଶ୍ରୀ ପ୍ରଦୀପ୍ତ ପରିଡା
ଶ୍ରୀ ହରିଚରଣ ପରିଡା
ଶ୍ରୀ ଅଭିମନ୍ୟୁ ମିଶ୍ର
ଶ୍ରୀ ହାରାଧନ ବାନାର୍ଜୀ

❑ ❑ ❑





Digitized by PPRACHIN, SOA

# ଆମର ମୁଖ୍ୟ ପରାମର୍ଶଦାତା



## ଶ୍ରୀ ଦେବ ପ୍ରସାଦ ମିଶ୍ର

ବାର୍ତ୍ତା ସମ୍ପାଦକ 'ସମାଜ'

ପିତା : ୰ ସ୍ୱର୍ଗତଃ ଆର୍ତ୍ତତ୍ରାଣ ମିଶ୍ର

ଜନ୍ମ : ୧୯୫୧ ମସିହା ଡିସେମ୍ବର ୪ ତାରିଖ

ଶିକ୍ଷା : ସ୍ନାତକୋତ୍ତର

ଉତ୍କଳ ସାମ୍ବାଦିକ ସଂଘର ସଭାପତି ଓ ଉତ୍କଳମଣି ସମ୍ବାଦପତ୍ର କର୍ମଚାରୀ ସଂଘର ପୂର୍ବତନ ସଭାପତି । ବରିଷ୍ଠ ସାମ୍ବାଦିକ ଶ୍ରୀ ମିଶ୍ର ସଂପ୍ରତି 'ସମାଜ'ର ବାର୍ତ୍ତା ସଂପାଦକ ଭାବେ କାର୍ଯ୍ୟରତ ।

ସ୍ଥାୟୀ ଠିକଣା : ଦେବପ୍ରସାଦ ମିଶ୍ର
ସାମ୍ବାଦିକ କଲୋନୀ,
ଗୋରାକବର, କଟକ
ଟେଲିଫୋନ : ୬୦୦୦୫୫ (ଘର)
: ୬୦୧୦୮୬ (କାର୍ଯ୍ୟାଳୟ)

☆ ☆ ☆



Digitized by PPRACHIN, SOA

# ଶ୍ରଦ୍ଧାଞ୍ଜଳି



*Pitabas Mohanty*

## ୰ ପୀତବାସ ମହାନ୍ତି

ଜନ୍ମ : ୧୬.୦୩.୧୯୧୪

ମୃତ୍ୟୁ : ୧୩.୧୨.୧୯୯୭

ପିତା : ୰ ରାମକୃଷ୍ଣ ମହାନ୍ତି

ସନ୍ତାନ : ଦୁଇଟି ପୁତ୍ର

ଶିକ୍ଷା : ଇ.ଟି. (ତାଲିମ୍ ପ୍ରାପ୍ତ)

୧୯୫୩ ମସିହାରୁ ସାମ୍ବାଦିକତାର ଖଡ଼ିପାଠ ଆରମ୍ଭ କରିଥିବା **ସ୍ୱର୍ଗତଃ ପୀତବାସ ମହାନ୍ତି** ଆଜି ଆମ ଗହଣରେ ନ ଥିଲେ ମଧ୍ୟ ତାଙ୍କର ନିଷ୍ଠା, କର୍ମତତ୍ପରତା ଓ ଆଦର୍ଶ ସାମ୍ବାଦିକମାନଙ୍କ ପାଇଁ ଧ୍ୟେୟ ହୋଇରହିଛି । ସେ 'ପ୍ରଜାତନ୍ତ୍ର'ର ଯାଜପୁର ପ୍ରତିନିଧିଭାବେ ଦୀର୍ଘଦିନ ଧରି କାର୍ଯ୍ୟ କରିଛନ୍ତି । ପ୍ରଜାତନ୍ତ୍ର ପ୍ରଚାର ସମିତି ପକ୍ଷରୁ ଓ ଯାଜପୁର ଜିଲ୍ଲା ପ୍ରଶାସନ ପକ୍ଷରୁ ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ଉତ୍ସବରେ ବରିଷ୍ଠ ସାମ୍ବାଦିକ ଭାବେ ସମ୍ମାନିତ ହୋଇଥିଲେ । ସେ ସରକାରୀ ସ୍ୱୀକୃତିପ୍ରାପ୍ତ ସାମ୍ବାଦିକ ଥିଲେ ଓ ମୃତ୍ୟୁ ପର୍ଯ୍ୟନ୍ତ ମଧ୍ୟ ଯାଜପୁର ଜିଲ୍ଲା ସାମ୍ବାଦିକ ସଂଘର ସଭ୍ୟଥିଲେ (ସଭ୍ୟ ତାଲିକା, କ୍ରମିକ ନମ୍ବର : ୨୯) ।

❑❑❑



Digitized by PPRACHIN, SOA



## ନରହରି ମହାନ୍ତି

ଜନ୍ମ : ୦୭.୦୭.୧୯୨୪

| | |
|---|---|
| ପିତା | : ୰ କସ୍ତୁରୀ ଚରଣ ମହାନ୍ତି |
| ମାତା | : ୰ ସୁଷମା ମହାନ୍ତି |
| ସନ୍ତାନ | : ଏକ ପୁତ୍ର ଓ ଦୁଇକନ୍ୟା |
| ଶିକ୍ଷା | : ମାଟ୍ରିକ୍ |
| ସମ୍ବାଦ ପତ୍ର | : ''ପ୍ରଜାତନ୍ତ୍ର'' |
| ଠିକଣା | : ବଡ଼ମଙ୍ଗଳପୁର,ପୋ.-ଧର୍ମଶାଳା-୭୫୫ ୦୦୮, ଯାଜପୁର |

ଜିଲ୍ଲାର ବରିଷ୍ଠ ସାମ୍ବାଦିକ **ନରହରି ମହାନ୍ତିଙ୍କ** ସାମ୍ବାଦିକତାର ଅଭିଜ୍ଞତା ସୁଦୀର୍ଘ ୪୩ ବର୍ଷ । 'ପ୍ରଜାତନ୍ତ୍ର'ର ଧର୍ମଶାଳା ପ୍ରତିନିଧି ଭାବେ ଏବେ ମଧ୍ୟ ପରିଣତ ବୟସରେ ସେ କାର୍ଯ୍ୟରତ । ୭୪ ବର୍ଷ ବୟସ୍କ ଶ୍ରୀ ମହାନ୍ତି ବହୁବାର ବିଭିନ୍ନ ଅନୁଷ୍ଠାନ ପକ୍ଷରୁ ସମ୍ବର୍ଦ୍ଧିତ ଓ ପୁରସ୍କୃତ । ବିଭିନ୍ନ ସଂବାଦପତ୍ର ପାଠ କରିବା ତାଙ୍କର ବଡ଼ ରୁଚି । ଧର୍ମଶାଳା ଅଞ୍ଚଳର ବିଭିନ୍ନ ସାଂସ୍କୃତିକ ସାହିତ୍ୟ ଓ ପୂଜ୍ୟପୂଜା କାର୍ଯ୍ୟକ୍ରମରେ ଅଗ୍ରଣୀ ଭୂମିକା ଗ୍ରହଣ କରି ଆସୁଛନ୍ତି ।

❑❑❑



Digitized by PPRACHIN, SOA



## ଚନ୍ଦ୍ରମଣି ପଣ୍ଡା

ଜନ୍ମ : ୧୭.୧୨.୧୯୩୨

| | |
|---|---|
| ପିତା | : କେଲୁ ଚରଣ ପଣ୍ଡା |
| ମାତା | : ଶ୍ରୀମତୀ କଢ଼ ଦେବୀ |
| ପତ୍ନୀ | : ଶ୍ରୀମତୀ ବୀଣାପାଣି ଦେବୀ |
| ସନ୍ତାନ | : ଦୁଇ ପୁତ୍ର ଓ ତିନି କନ୍ୟା |
| ଶିକ୍ଷା | : ବି.ଏ. (ସମ୍ମାନ), ଏଲ୍.ଏଲ୍.ବି.,ବି.ଏଡ୍. |
| ସଂବାଦପତ୍ର | : 'ସଂପାଦକ ଓ କାଳାନ୍ତର' |
| ସ୍ଥାୟୀ ଠିକଣା | : ସା-ବିବିସରାଇ, ସରକାରୀ ବସ୍‌ଷ୍ଟାଣ୍ଡ, ଜିଲ୍ଲା-ଯାଜପୁର |
| | : ପିନ୍-୭୫୫ ୦୦୧ |
| ଟେଲିଫୋନ | : ୦୬୭୨୮-୨୦୧୫୨ |

ଜଣେ ବ୍ୟଙ୍ଗ କଥାକାର ଓ ବର୍ଷୀୟାନ ସାମ୍ବାଦିକ ଭାବେ **ଶ୍ରୀ ଚନ୍ଦ୍ରମଣି ପଣ୍ଡା** ଯାଜପୁର ଜିଲ୍ଲାରେ ସାମ୍ବାଦିକ ମହଲରେ ବେଶ୍ ସୁପରିଚିତ । ନିଜର ଶାଣିତ ଲେଖନୀ ଚାଳନା ପାଇଁ ବହୁ ଅନୁଷ୍ଠାନରୁ ପୁରସ୍କୃତ ଓ ସମ୍ମାନିତ । ସଂପ୍ରତି ଓକିଲାତି କାର୍ଯ୍ୟରେ କାର୍ଯ୍ୟରତ ।

❑❑❑



Digitized by PPRACHIN, SOA



## କୃଷ୍ଣଚନ୍ଦ୍ର ସାମଲ

ଜନ୍ମ : ୧୯୪୬ ମସିହା

| | |
|---|---|
| ପିତା | : ୰ ରସାନନ୍ଦ ସାମଲ |
| ମାତା | : ଶ୍ରୀମତୀ ହେମାମଣି |
| ପତ୍ନୀ | : ଶ୍ରୀମତୀ ତାରା ସାମଲ |
| ସନ୍ତାନ | : ତିନୋଟି ପୁତ୍ର |
| ଶିକ୍ଷା | : ସ୍ନାତକ |
| ସଂବାଦପତ୍ର | : 'ପ୍ରଜାତନ୍ତ୍ର' |
| ଠିକଣା | : ଗ୍ରା.-ମାର୍ଥାପୁର, ପୋ.-ଶ୍ରୀବନ୍ତପୁର, ଭାୟା-ଶଙ୍ଖଚିଲା । ଜିଲ୍ଲା : ଯାଜପୁର । |
| ଟେଲିଫୋନ | ୨୧୨୩୦ (୦୬୭୨୬) |

'ପ୍ରଜାତନ୍ତ୍ର'ର ଯାଜପୁର ରୋଡ଼ ପ୍ରତିନିଧି ଭାବେ ଅବସ୍ଥାପିତ । **ଶ୍ରୀ ସାମଲ**ଙ୍କର ସାମ୍ବାଦିକତା ଜୀବନ ଆରମ୍ଭ ହୁଏ ୧୯୬୭ ମସିହାଠାରୁ । ଦୀର୍ଘ ୩୦ ବର୍ଷରୁ ଅଧିକ ସମୟ ଧରି ସେ ସଂବାଦପତ୍ରରେ ଜନଜୀବନ ସମସ୍ୟା ଓ ଅନୁସନ୍ଧାନମୂଳକ ସଂବାଦ ପରିବେଷଣ କରିଆସିଛନ୍ତି । ସାହିତ୍ୟ-ସଂସ୍କୃତି ଅନୁଷ୍ଠାନ 'ଗୋକର୍ଣ୍ଣିକା' ପକ୍ଷରୁ ସମ୍ମାନିତ ହୋଇଥିବା ଶ୍ରୀ ସାମଲ ସଂବାଦ, ଫିଚର ଧର୍ମୀ ସମ୍ବାଦ ଓ ଗଳ୍ପ ଲେଖିବାରେ ସିଦ୍ଧହସ୍ତ । ପଢ଼ିବା ଓ ଲେଖିବା ହେଉଛି ତାଙ୍କର ପ୍ରିୟରୁଚି । ଯାଜପୁର ଜିଲ୍ଲା ସାମ୍ବାଦିକ ସଂଘର ସଭାପତି ଥିଲେ । ଯାଜପୁର ସ୍ୱତନ୍ତ୍ର ଜିଲ୍ଲା କରିବାରେ ଅନ୍ୟତମ କର୍ଣ୍ଣଧାର ।

❐❐❐



Digitized by PPRACHIN, SOA



# ହୃଷୀକେଶ ମହାପାତ୍ର

ଜନ୍ମ : ୧୯୩୧ ମସିହା

ସଭାପତି, ଯାଜପୁର ଜିଲ୍ଲା ସାମ୍ବାଦିକ ସଂଘ

| | |
|---|---|
| ପିତା | : ୰ ବାମଦେବ ମହାପାତ୍ର |
| ମାତା | : ୰ ସୀତା ଦେବୀ |
| ପତ୍ନୀ | : ଶ୍ରୀମତୀ ଶଶି ମହାପାତ୍ର |
| ସନ୍ତାନ | : ୮ ପୁତ୍ର ଓ ୨ କନ୍ୟା |
| ଶିକ୍ଷା | : ମାଟ୍ରିକ୍ |
| ସଂବାଦପତ୍ର | : 'ମାତୃଭାଷା' |
| ଠିକଣା | : ଶୀତଳେଶ୍ୱର, ଜିଲ୍ଲା-ଯାଜପୁର |
| ଟେଲିଫୋନ | ୦୬୭୨୮-୨୦୬୮୩ |

ଯାଜପୁର ଜିଲ୍ଲାର ବରିଷ୍ଠ ଓ ସରକାରୀ ସ୍ୱୀକୃତି ପ୍ରାପ୍ତ ସାମ୍ବାଦିକ । ଏବେ ସେ ଯାଜପୁର ଜିଲ୍ଲା ସାମ୍ବାଦିକ ସଂଘର ସଭାପତି ଅଛନ୍ତି । ସାମ୍ବାଦିକତା କ୍ଷେତ୍ରରେ ତାଙ୍କର ସୁଦୀର୍ଘ ୩୨ ବର୍ଷର ଅଭିଜ୍ଞତା ରହିଛି । ସଂପ୍ରତି 'ମାତୃଭାଷା'ର ଯାଜପୁର ଜିଲ୍ଲା ପ୍ରତିନିଧି ଭାବେ ସେ ଅବସ୍ଥାପିତ । 'ମାତୃଭାଷା'ର ବାର୍ଷିକ ଉତ୍ସବରେ ସେ ମୁଖ୍ୟମନ୍ତ୍ରୀ ଓ ସ୍ୱାଧୀନତାର ସ୍ୱର୍ଣ୍ଣଜୟନ୍ତୀ ଉତ୍ସବରେ ଅବକାରୀ ମନ୍ତ୍ରୀଙ୍କଠାରୁ ଜିଲ୍ଲାସ୍ତରୀୟ ସାମ୍ବାଦିକ ସମ୍ମାନର ଗୌରବ ଅର୍ଜନ କରିଛନ୍ତି । ଶ୍ରୀ ମହାପାତ୍ର ୬୭ ବର୍ଷ ବୟସରେ ଏବେ ମଧ୍ୟ ବେଶ୍ କର୍ମଠ ଓ ସକ୍ରିୟ ଅଛନ୍ତି ।

❏❏❏



Digitized by PPRACHIN, SOA

